# ମୋ କଥା : କଳାବିକାଶ କେନ୍ଦ୍ରର କଥା



ଶ୍ରୀ ବାବୁଲାଲ ଦୋଶୀ

# ଅଭିମତ

କଳାବୈଭବ ସମ୍ପନ୍ନ ଉତ୍କଳରେ କେବଳ ପୂର୍ବକାଳୀନ କଳା ଓ ସ୍ଥାପତ୍ୟ ଯେ ପୃଥିବୀରେ ଖ୍ୟାତି ଲଭିଥିଲା ତାହା ନୁହେଁ, ସଂଗୀତ, ନାଟକ, ବାଦ୍ୟ ଓ ନୃତ୍ୟକଳାରେ ଉତ୍କଳ ତାହାର ଉତ୍କର୍ଷ ଲାଭକରି ଆସିଅଛି । ସଙ୍ଗୀତ ବୋଇଲେ ଗାନ, ତୌର୍ଯ୍ୟତ୍ରିକ, ନୃତ୍ୟ, ଗୀତ ଓ ବାଦ୍ୟ—

"ଗୀତ ବାଦ୍ୟ ନୃତ୍ୟ ତ୍ରୟଂ ନାଟ୍ୟ ତୌର୍ଯ୍ୟତ୍ରିକଂ ତ୍ରିତତ୍ତ୍ୱ ।
ସଂଗୀତ ପ୍ରେକ୍ଷଣାର୍ଥେଽସ୍ମିନ୍ ଶାସ୍ତ୍ରୋକ୍ତେ ନାଟ୍ୟ ମର୍ମିକା ।"

ଶାସ୍ତ୍ରରେ ଅଛି—"ଗୀତ ବାଦ୍ୟ ତ୍ରୟଂ ସଙ୍ଗୀତ-ମୁଚ୍ୟତେ ।"

ଅର୍ଥାତ୍ ଗୀତ ବାଦ୍ୟ ଓ ନୃତ୍ୟ ଏହି ତିନୋଟିକୁ ସଙ୍ଗୀତ କୁହାଯାଏ । ଏ ପ୍ରତ୍ୟେକଟିକୁ ମଧ୍ୟ ସଙ୍ଗୀତ କୁହାଯାଏ । ଏହି ତିନୋଟିର ସମନ୍ୱୟକୁ ସଙ୍ଗୀତ କୁହାଯାଏ । ଓଡ଼ିଶାରେ ବହୁ ପ୍ରାଚୀନ କାଳରୁ ସଙ୍ଗୀତ ଚର୍ଚ୍ଚା ଏବଂ ମୌଳିକ ରାଗ ରାଗିଣୀରେ ରଚିତ ସଙ୍ଗୀତର ଗାୟନ ଓ ତତ୍ ସଂହାର୍ଯ୍ୟର ବୈଜ୍ଞାନିକ ପ୍ରଣାଳୀରେ ବାଦନ ଏବଂ ମାହାରୀ ଗୋଟିପୁଅ ପ୍ରଭୃତିଙ୍କଦ୍ୱାରା ଅଭିନୀତ ଓଡ଼ିଶୀ ଓ ବିଭିନ୍ନ ପ୍ରକାର ନୃତ୍ୟକଳା ଯେ ଅତି ଲୋକପ୍ରିୟ ଓ ଇତିହାସ ପ୍ରସିଦ୍ଧ ଏଥିରେ ସନ୍ଦେହ ନାହିଁ, କିନ୍ତୁ ଏ ସବୁର ବୈଜ୍ଞାନିକ ବିଶ୍ଳେଷଣ ଓ ଏଥିରେ ମୌଳିକତା ବା ବୈଶିଷ୍ଟ୍ୟ ଏବଂ ଭାରତର ଅନ୍ୟ ଅଞ୍ଚଳର ସଂଗୀତ କଳା ସହିତ ଏହାର ସଂପର୍କ ଇତ୍ୟାଦି ବିଷୟରେ ଆଲୋଚନା ଗବେଷଣା, ଅଭ୍ୟାସ ଓ ଅଭିନୟ ସୂତ୍ରରେ ଏହାର ମାନ ନିୟନ୍ତ୍ରଣ ଓ ପରିବେଷଣ ଗୋଟିଏ ଅତି ଜଟିଳ ବିଷୟ । ଏ ସବୁର ପୁନରୁଦ୍ଧାର ସଂସ୍କାର ଓ ବିକାଶର ଆବଶ୍ୟକତା ଥିବାରୁ ଓଡ଼ିଶାରେ କେତେକ ବିଶେଷଜ୍ଞଙ୍କୁ ନେଇ କିଛିକାଳ ପୂର୍ବେ ଉତ୍କଳ ନୃତ୍ୟ ନାଟ୍ୟକଳା ପରିଷଦ ଗଠିତ ହୋଇଥିଲା ।

କିନ୍ତୁ ଏହା ବେଶି ଦିନ ସ୍ଥିରଭାବେ କାର୍ଯ୍ୟକରି ପାରିଲା ନାହିଁ । ସରକାରଙ୍କ ପକ୍ଷରୁ ସଂଗୀତ ନାଟକ ଏକାଡେମୀ ଓ ପରେ ସଂଗୀତ ମହାବିଦ୍ୟାଳୟର ପ୍ରତିଷ୍ଠା ହେଲା । ମାତ୍ର ଓଡ଼ିଶାର ଏହି ସଂଗୀତ, ନାଟକ ଓ ନୃତ୍ୟକଳା ସାଧାରଣ କ୍ଷେତ୍ରରେ ଆଧୁନିକ ରୁଚିସମ୍ପନ୍ନ କରାଇ ବୈଜ୍ଞାନିକ ପ୍ରଣାଳୀରେ ବିକାଶ କରାଇବା ପାଇଁ ଯେଉଁମାନେ ବେସରକାରୀ ଭାବରେ ଉଦ୍ୟମ କରିଥିଲେ ସେମାନେ 'ଜନ ସଂସ୍କୃତି ସଂଘ' ନାମରେ କଟକରେ ଗୋଟିଏ ସଂସ୍ଥା ଗଢ଼ିଥିଲେ ଏବଂ ବିଭିନ୍ନ ସଂଗୀତ ନାଟକ ପରିବେଷଣ କରିବା ଦିଗରେ ସେମାନେ ଉଦ୍ୟମ କଲେ । ନାନା କାରଣରୁ ଏହି ସଂଘ ମଧ୍ୟ ଧାରାବାହିକ ଭାବରେ କାର୍ଯ୍ୟକରି ପାରିଲା ନାହିଁ । ଶେଷରେ ଏମାନଙ୍କ ସହିତ ସଂପୃକ୍ତ ଥିବା ୧୯୨୪ରୁ ଜଣେ ସ୍ୱାଧୀନତା ସଂଗ୍ରାମୀ, କଳାପ୍ରେମୀ ଗୁଜୁରାଟୀ ଋଷି ଶ୍ରୀ ବାବୁଲାଲ୍ ଦୋଶୀ କଳାପ୍ରେମୀ ରାଖାଲ ବାବୁ, କସ୍ତୀବାବୁଙ୍କ ସହ ସଂଗୀତ ବିଦ୍ୟା ବିଶାରଦ ବିଶ୍ୱନାଥ ରାଓଙ୍କ ସାହାଯ୍ୟରେ ଏବଂ ଶ୍ରୀ ରାମପ୍ରସାଦ ମହାନ୍ତି ଓ ବୈକୁଣ୍ଠ ନାଥ ମହାନ୍ତି ପ୍ରମୁଖ ସ୍ୱାଧୀନତା ସଂଗ୍ରାମୀଙ୍କ ସହଯୋଗରେ କଟକରେ 'କଳାବିକାଶ' ନାମକ ଏକ ପ୍ରତିଷ୍ଠାନ ପ୍ରତିଷ୍ଠା କଲେ । ୧୯୫୬ ମସିହା ଅଗଷ୍ଟ ୧୦ ତାରିଖରେ ଏହା ବିଧିବଦ୍ଧ ଭାବରେ ପ୍ରତିଷ୍ଠିତ ହେଲା । ଉତ୍କଳର ଦରପୂନ ପ୍ରଖ୍ୟାତ ଶିକ୍ଷାବିତ୍ ଓ ବିଜ୍ଞାନବିତ୍ ଡକ୍ଟର ପ୍ରାଣକୃଷ୍ଣ ପରିଜା ଏହି ଅନୁଷ୍ଠାନର ପ୍ରଥମେ ସଭାପତି ହୋଇଥିଲେ । ଏହା ସଂଗୀତ ବିଦ୍ୟାଳୟ ପରି କାର୍ଯ୍ୟକଲା । ଗତ ୨୫ ବର୍ଷ ମଧ୍ୟରେ ଏହି 'କଳା ବିକାଶ' କେନ୍ଦ୍ର ଏକ ବିରାଟ ଅନୁଷ୍ଠାନରେ ପରିଣତ ହୋଇଛି । ଏଥିରେ କେବଳ ସଂଗୀତ କଳାର ଯେ ଚର୍ଚ୍ଚା ହୁଏ ତାହା ନୁହେଁ । ସଂଗୀତ ଶିକ୍ଷା, ସଂଗୀତ ଗବେଷଣା, ସଂଗୀତର ବୈଜ୍ଞାନିକ ବିକାଶ, ଓଡ଼ିଶାର ବିଭିନ୍ନ ପ୍ରକାର ନୃତ୍ୟ କଳାର ମୌଳିକ ଓ ବୈଜ୍ଞାନିକ ପରିପାଟୀର ଅଧ୍ୟୟନ ଓ ଅନୁଧ୍ୟାନ ସଂକଳନ ଏବଂ ସଂପ୍ରସାରଣ ଓ ଆନୁଷ୍ଠାନିକ ଭାବରେ ପରିବେଷଣ ଓ ପ୍ରଚାରର ବ୍ୟବସ୍ଥା ଏହି ଅନୁଷ୍ଠାନ ପକ୍ଷରୁ କରାଯାଏ । ନୃତ୍ୟ ବିଶାରଦ ଗୁରୁ କେଳୁଚରଣ ମହାପାତ୍ରଙ୍କଠାରୁ ଆରମ୍ଭ କରି ବହୁ କଳାବିତ୍ ଏହି ଅନୁଷ୍ଠାନରେ ଯୋଗଦେଲେ । କଟକ ତଥା ଉତ୍କଳର କଳାପ୍ରେମୀମାନେ ସମସ୍ତ କ୍ରମେ ଏହାର ପୃଷ୍ଠପୋଷକ ଓ ସହାୟକ ହେଲେ । ସାଧାରଣ ବାଳକ ବାଳିକାଙ୍କ ଭିତରେ ନୃତ୍ୟ ସଙ୍ଗୀତ ବିଷୟରେ ଯେଉଁ ସ୍ୱାଭାବିକ ପ୍ରତିଭା ନିହିତ ତାହାର ପରିଚୟ, ପ୍ରକାଶ, ବିକାଶ ଓ ବୈଜ୍ଞାନିକ ପ୍ରଣାଳୀରେ ବିନିଯୋଗ ଓ ଉପଯୋଗ କୌଶଳ ଏହି ସଂସ୍ଥା ସାଂଗଠନିକ ଭାବରେ

ଉଦ୍ଭାବନ କଲେ । ଓଡ଼ିଶାର ବହୁ ସଂଗୀତାନୁଷ୍ଠାନ ରହିଛି, ସେମାନେ ଉତ୍ତମ କାର୍ଯ୍ୟ କରୁଛନ୍ତି । କିନ୍ତୁ କଟକର କଳା ବିକାଶ କେନ୍ଦ୍ର ଏ କ୍ଷେତ୍ରରେ ଯେପରି ଅଗ୍ରଣୀ ହୋଇ ଏକ-ବିରାଟ ଗବେଷଣା କେନ୍ଦ୍ର ଓ ଏକ ଆନ୍ତର୍ଜାତିକ ତାଲିମ କେନ୍ଦ୍ରରେ ପରିଣତ ହୋଇଛି ଅନ୍ୟ ଅନେକ ଅନୁଷ୍ଠାନ ସେପରି କରିପାରି ନାହାନ୍ତି । କଟକ କଳା ବିକାଶ କେନ୍ଦ୍ରର ସ୍ଥାୟୀ ମଞ୍ଚ ଓ କଳା ମନ୍ଦିର ଏକ ଅଭିନବ ଅନୁଷ୍ଠାନ । ବେସରକାରୀ ସୂତ୍ରରେ ଏଭଳି ଅନୁଷ୍ଠାନ ଓଡ଼ିଶାର ଅନ୍ୟ କୁତ୍ରାପି ହୋଇନାହିଁ । ଏହାର ପ୍ରାଣ ପ୍ରତିଷ୍ଠାତା ଶ୍ରୀ ବାବୁଲାଲ ଦୋଶୀ ଏହି ଅନୁଷ୍ଠାନ ଗଢ଼ିବା ପାଇଁ ଅଶେଷ ତ୍ୟାଗ କରିଛନ୍ତି । ସେ ସରକାରୀ ଓ ବେସରକାରୀ ସବୁ ଶ୍ରେଣୀର ସାହାଯ୍ୟ ନେଇ ନାନା ବାଧା ବିଘ୍ନରେ ଏହାକୁ ଯେପରି ସଙ୍ଗଠିତ ଓ ପ୍ରଗତିଶୀଳ କରିପାରି-ଛନ୍ତି । ସେଥିପାଇଁ ତାଙ୍କୁ ଧନ୍ୟବାଦ ଦେବାକୁ ମୋର ଭାଷା ନାହିଁ ।

ସେ ଏହି ପୁସ୍ତକରେ ଏହି ଅନୁଷ୍ଠାନର ଜୀବନ କାହାଣୀ ଲିପିବଦ୍ଧ କରିଛନ୍ତି । ନାନା ବାଧାବିଘ୍ନ ଭିତରେ କଳା ବିକାଶ କେନ୍ଦ୍ରର ଅଗ୍ରଗତି ଓ ବର୍ତ୍ତମାନ ଅନୁଷ୍ଠିତ ହେବାକୁ ଯାଉଥିବା ରଜତ ଜୟନ୍ତୀ ଉତ୍ସବ ଭାଇ ବାବୁଲାଲ ଦୋଶୀ, ତାଙ୍କ ସହକର୍ମୀ ଓ ପ୍ରଖ୍ୟାତ କଳାବନ୍ତମାନଙ୍କ ଉଦ୍ୟମ ଓ ସାଧନାର ପ୍ରଶଂସନୀୟ ପରିଣତି ବୋଲିବାକୁ ହେବ । ଆଜ ଉପରାଷ୍ଟ୍ରପତି ମାନ୍ୟବର ଶ୍ରୀ ବି.ଡ଼ି. ଜତ୍ତି ସଦୟ ହୋଇ ଏହି ରଜତ ଜୟନ୍ତୀ-ଉତ୍ସବ ଉଦ୍‌ଘାଟନ କରୁଥିବାରୁ କଳା ବିକାଶ କେନ୍ଦ୍ର ଯେପରି ଗୌରବାନ୍ୱିତ ହେଉଛି ଏହାର ଭବିଷ୍ୟତର ଅଧିକତର ଅଗ୍ରଗତି ସେହିଭଳି ଯେ ଅଧିକତର ନୈତିକ ଓ ସାଂସ୍କୃତିକ ପ୍ରେରଣା ପାଉଛି ଏବଂ ତଦ୍ୱାରା ଏହାର ଭବିଷ୍ୟତ ଅଧିକତର ଉଜ୍ଜ୍ୱଳ ହେବ । ଏହି ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ କଳା ବିକାଶ କେନ୍ଦ୍ର ଉତ୍କଳୀୟ ତଥା ଭାରତୀୟ କଳାର ଅଧିକତର ବିକାଶ ଓ ବିସ୍ତାର ଦିଗରେ ସେ ତାହାର ମୌଳିକ ଦାନ ଯେ ଦେଇପାରିବ ଏବଂ ସର୍ବସାଧାରଣଙ୍କର ଓ ଈଶ୍ୱରଙ୍କର ଅଧିକରୁ ଆଶୀର୍ବାଦ ପ୍ରକାଶ ପାଇବ ଏଥିରେ ସନ୍ଦେହ ନାହିଁ । "ଶ୍ରେୟାଂସି ବହୁ ବିଘ୍ନାନି ।" କୌଣସି ହିତକର କାର୍ଯ୍ୟ କରିବାକୁ ଗଲେ ବହୁ ବାଧାବିଘ୍ନ ଭିତର ଦେଇ ଗତି କରିବାକୁ ପଡ଼େ । ବାବୁଲାଲ ଦୋଶୀ, ତାଙ୍କ ସାଥୀ ଓ କଳାବନ୍ତମାନେ ତାଙ୍କର କର୍ତ୍ତବ୍ୟ ନିଷ୍ଠା ଉଚ୍ଚ ଆଦର୍ଶ ଏବଂ ଧୈର୍ଯ୍ୟ ଓ କଠୋର ସାଧନା ବଳରେ ଯାହା କରିପାରିଛନ୍ତି ଏବେ ମଧ୍ୟ ତାହାର ପଟାନ୍ତର ନାହିଁ । ଆମର ଦୃଢ଼ ବିଶ୍ୱାସ ସରକାର, ସାଧାରଣ ଓ ସକଳ ଶ୍ରେଣୀର କଳାବନ୍ତ କଳାପ୍ରେମୀମାନଙ୍କ ସହଯୋଗ

ଓ ଶୁଭେଚ୍ଛା ସାଙ୍ଗକୁ ପରମ ପିତା ପରମେଶ୍ୱରଙ୍କର ଆଶୀର୍ବାଦ ଏହି ଅନୁଷ୍ଠାନ ଉପରେ ବର୍ଷିତ ହେବ ଓ ଏହାର ଅଭାବ ଦୂରୀଭୂତ ହୋଇ ଏହା ନିର୍ଦ୍ଦିଷ୍ଟ ଭାବରେ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବ ।

"ସତ୍ୟ ମେବ ଜୟତେ ।"

ନବ ବର୍ଷର ଶୁଭେଚ୍ଛା ସହ

**ରାଧାନାଥ ରଥ**

ସଂପାଦକ 'ସମାଜ'

କାର୍ଯ୍ୟକାରୀ ସଭାପତି

କଳା ବିକାଶ କେନ୍ଦ୍ର ରଜତ ଜୟନ୍ତୀ

ଉତ୍ସବ ସମିତି ।

କଟକ

ତା ୧୪ । ୧ । ୭୭



# ମୋ କଥା—
# କଳା ବିକାଶ କେନ୍ଦ୍ରର କଥା
## (ପ୍ରଥମ ଖଣ୍ଡ)

## କୃତଜ୍ଞତା

ଏ ପୁସ୍ତକ ସଂକଳନରେ ଶ୍ରୀ ନବ କିଶୋର ମହାନ୍ତି, ଶ୍ରୀ ବୈକୁଣ୍ଠ
ନାଥ ମହାନ୍ତି, ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକଙ୍କ ପରି ବନ୍ଧୁମାନେ
ମତେ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କଠାରେ
କୃତଜ୍ଞ । ଆହୁରି ଅନେକ ବନ୍ଧୁ ପରୋକ୍ଷ ଓ
ପ୍ରତ୍ୟକ୍ଷ ପ୍ରୋତ୍ସାହନ ଦେଇଛନ୍ତି
ତାଙ୍କ କଥା ମଧ୍ୟ ଏ ଅବସରରେ
ସ୍ମରଣ କରୁଛି ।

ଶ୍ରୀ ଭଗବାନ ମିଶ୍ର ବହିଟିର
ମୁଦ୍ରଣ ଭାର ନେଇ ଥିବାରୁ ତାଙ୍କୁ
ଧନ୍ୟବାଦ ଜଣାଉଛି ।

❋ ❋ ❋ ❋

❋ ❋ ❋

ଶ୍ରୀ ବାବୁଲାଲ ଦୋଷୀ

# ଉତ୍ସର୍ଗ

ଏ ଦେଶର ଅଗଣିତ କଳାକାରଙ୍କ ହାତରେ....

# ମୋ କଥା

# କଳା ବିକାଶ କେନ୍ଦ୍ରର କଥା

## ଦ୍ୱିତୀୟ ସଂସ୍କରଣ

କଳା ବିକାଶ କେନ୍ଦ୍ରର ରୌପ୍ୟ ମହୋତ୍ସବ ପାଳନ ସମୟରେ ଦୀର୍ଘ ପଚିଶ ବର୍ଷର ମୋର କେନ୍ଦ୍ର ସହ ସମ୍ପର୍କ ଏବଂ ଅନୁଭୂତି ନେଇ ଗୋଟିଏ କିଛି ଲେଖିବା ପାଇଁ ଇଚ୍ଛା ହେଲା । ଏ ଦିଗରେ ମୋର ଅନୁଭୂତି ଭବିଷ୍ୟତର କର୍ମକର୍ତ୍ତାମାନଙ୍କୁ ପ୍ରେରଣା ଦେବ କେବଳ ଏହି ଉଦ୍ଦେଶ୍ୟ ସାମନାରେ ରଖି ମୁଁ ପଚିଶ ବର୍ଷର କେନ୍ଦ୍ରର ଉତ୍ଥାନ ପତନର ଇତିହାସ ଏବଂ ମୋ ଜୀବନର ମଧ୍ୟ ସୁଖଦୁଃଖର କାହାଣୀ ମୁଁ ଅକ୍ଷରରେ ସୁନ୍ଥାଇଛି । ସେକଥା ଲେଖିଲା ବେଳେ ଯେଉଁ ବନ୍ଧୁମାନଙ୍କର କଥା ଉଲ୍ଲେଖ କରିଛି ସେମାନଙ୍କ ଭିତରୁ ଆଜି ଅନେକେ ନାହାନ୍ତି । ଦ୍ୱିତୀୟ ସଂସ୍କରଣ ଏବେ ପ୍ରକାଶ ହେବାକୁ ଯାଉଛି । ଏଥିରେ ଆହୁରି ପରବର୍ତ୍ତୀ ପାଞ୍ଚ ବର୍ଷର ଘଟଣାବଳୀ ଯୋଗ କରାଯାଇ ନୂଆ ସଂସ୍କରଣ ପ୍ରଥମ ଓ ଦ୍ୱିତୀୟ ଏହିପରି ଦୁଇ-ଖଣ୍ଡରେ ପ୍ରକାଶିତ ହୋଇଛି । ଦ୍ୱିତୀୟ ସଂସ୍କରଣରେ ପ୍ରଥମ ଖଣ୍ଡର କିଛି ଅଦଳ ବଦଳ କରି ନାହିଁ ।

ଏହି କ୍ଷୁଦ୍ର କାହାଣୀ ଲୋକାଦୃତ ହେବାରୁ ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବାର ସାହସ କରୁଛି । ଏହା ମଧ୍ୟ ତଦନୁରୂପ ଆଦୃତ ହେବ ବୋଲି ମୋର ବିଶ୍ୱାସ ।

**କଳା ବିକାଶ କେନ୍ଦ୍ର** — **ବାବୁଲାଲ ଦୋଶୀ**

କେ.ଭି.କେ. ମାର୍ଗ

କଟକ—୭୫୩୦୦୧

୧-୯-୮୧

ବିଷୁବ ମିଳନ
୧୯୬୦



# ବାବୁଲାଲ୍ ଦୋଶୀ

ଓଡ଼ିଶାର ସଙ୍ଗୀତ, ନୃତ୍ୟ ଓ ନାଟ୍ୟକଳାର ଉନ୍ନତି ପାଇଁ ଶ୍ରୀ ବାବୁଲାଲ ଦୋଶୀଙ୍କ ଉଦ୍ୟମ ପ୍ରଶଂସନୀୟ । ଅତୁଳନୀୟ ନିଷ୍ଠା, ଏକାଗ୍ରତା ଓ ଅଧ୍ୟବସାୟ ଦ୍ୱାରା ସେ ନିଜର ବଳିଷ୍ଠ ସଂଗଠନ ଶକ୍ତିର ପରିଚୟ ଦେଇଛନ୍ତି । ଓଡ଼ିଶାର କଳା କ୍ଷେତ୍ରରେ ଏହି ସରଳ ଓ ନିରଳସ କର୍ମୀଙ୍କୁ ଆମେ ସମ୍ମାନିତ କରୁଛୁ ।

ସଭାପତି
ବିଷୁବମିଳନ

ଚେୟାରମ୍ୟାନ
ପ୍ରଜାତନ୍ତ୍ର ପ୍ରଚାର ସମିତି

**VISUBA MILAN**
**1960**

PRAJATANTRA
PRACHAR SAMITI

**BABULAL DOSHI**

THE EFFORTS OF SHRI BABULAL DOSHI FOR THE ADVANCEMENT OF MUSIC DANCE AND DRAMATICS IN ORISSA DESERVE APPRECIATION. BY HIS UNPARALLELED DEVOTION, PERSEVERANCE AND LOVE FOR THE CAUSE HE HAS GIVEN PROOF OF HIS STRONG AND INDOMITABLE ORGANISATIONAL ABILITIES. WE HONOUR THIS SELFLESS, UNASSUMING WORKER IN THE FIELD OF ORISSAN ARTS.

**SD Y. N SUKTHANKAR**
*PRESIDENT*
VISUBA MILANA

**SD. HAREKRUSHNA MAHTAB**
*CHAIRMAN*
PRAJATANTRA PRACHAR SAMITI

ଲେଖକ ଓ ପ୍ରକାଶକ :

**ବାବୁଲାଲ ଦୋଶୀ**

ପ୍ରାପ୍ତିସ୍ଥାନ :

**କଳା ବିକାଶ କେନ୍ଦ୍ର**

କେ. ଭି. କେ. ମାର୍ଗ, କଟକ-୭୫୩୦୦୧

ପ୍ରଚ୍ଛଦପଟ ଶିଳ୍ପୀ :

**ଶ୍ରୀ ଉଦୟନାଥ ଜେନା**

ମୁଦ୍ରାକର :

ରୁବି ପ୍ରିଣ୍ଟର୍ସ

ନିମଚଉଡ଼ି, କଟକ-୨

**ମୂଲ୍ୟ—୫ ଟଙ୍କା ମାତ୍ର**

# ଭୂମିକା—

ମୁଁ ସାହିତ୍ୟିକ ନୁହେଁ, କିମ୍ବା ନିଜ କୃତିତ୍ୱ ବଖାଣି ବାହାବା ନେବା ଅଭିପ୍ରାୟ ମୋର ନାହିଁ । ମୁଁ ଜଣେ ସାମାନ୍ୟ କର୍ମୀ । କେତେ ଦିନ ରାଜନୈତିକ କର୍ମୀ ଥିଲି । ବର୍ତ୍ତମାନ କଳା କ୍ଷେତ୍ରରେ ନିଜକୁ ନିୟୋଜିତ କରିଛି । ସେ ଦୃଷ୍ଟିରୁ ମୋର କେତେକ ଅଭିଜ୍ଞତା ଏଠାରେ ଲିପିବଦ୍ଧ କରୁଛି ଏହି ଆଶାରେ ଯେ ଏ ପ୍ରକାର ଉଦ୍ୟମରେ ବ୍ରତୀ ଥିବା ଅନ୍ୟମାନେ କିଛି ପ୍ରେରଣା ପାଇବେ ।

ତା ଛଡ଼ା, କଳା ବିକାଶ କେନ୍ଦ୍ରର ଏବେ ରଜତ ଜୟନ୍ତୀ ସମ୍ବତ୍ସର । କଳା ବିକାଶ କେନ୍ଦ୍ର ସମ୍ପର୍କରେ କିଛି କହିବାକୁ ଗଲେ, ମୋ ବିଷୟରେ ଟିକିଏ ଉଲ୍ଲେଖ ନ କଲେ ତାହା ଅସମ୍ପୂର୍ଣ୍ଣ ରହିଯିବ । ତେଣୁ ହିଁ ମୋର ଏ ଅବତାରଣା ।

ଅତି ବାଲ୍ୟାବସ୍ଥାରେ ପିତୃମାତୃହରା ମୁଁ ମାମୁଁ ଘରେ ଆଈ ପାଖରେ ବଢ଼ିଥିଲି । କିଏ ଜାଣେ କାହିଁକି ପିଲାଦିନୁ ହିଁ ନୃତ୍ୟଗୀତାଦି ପ୍ରତି ଖୁବ୍ ଆକର୍ଷଣ ଥିଲା । ଆମ ଗୁଜରାଟ ରାଜ୍ୟରେ ଦୁର୍ଗାପୂଜା ଏବଂ ନଅ ଦିନ ପର୍ଯ୍ୟନ୍ତ ପାଳନ କରାଯାଏ ଏବଂ ସେଥିପାଇଁ ଆମେ ତାକୁ 'ନବରାତ୍ର' ଉତ୍ସବ କହୁ । ଏହି ଉତ୍ସବଟିରେ ଗାଁର ପ୍ରତି ଗଳିକନ୍ଦିରେ ପ୍ରତିଷ୍ଠିତ ଦୁର୍ଗା ମୂର୍ତ୍ତି (ବହୁଚରା) ସ୍ୱରୂପଟେ ଏହି ନଅ ଦିନ ପ୍ରତି ରାତିରେ ଯୁବକ ଯୁବତୀ, ବୃଦ୍ଧ ବାଳକ ସେ ଅଞ୍ଚଳର ଲୋକନୃତ୍ୟ, ଗରବା, ଦାଣ୍ଡିଆ, ରାହାସ ଇତ୍ୟାଦି କରନ୍ତି । ଭବାଇ ( ବେଶଯାତ୍ରା ) ଇତ୍ୟାଦି ମଧ୍ୟ ହୁଏ । ପ୍ରଥମେ ବିଦୂଷକ ଆସି ସଂକ୍ଷେପରେ ବର୍ଣ୍ଣନା କରେ ଏବଂ ତାହାପରେ କୌଣସି ଏକ ଚରିତ୍ରକୁ ନେଇ ନାଟକ ଇତ୍ୟାଦି ପରିବେଷଣ କରାଯାଏ । ବେଳେ-ବେଳେ ଏହି ନଅ ରାତି ଧରି ପୂରା ରାମାୟଣ ମଧ୍ୟ ପରିବେଷିତ ହୁଏ । ଶେଷ ଦିନ ବିଜୟା ଦଶମୀ ପାଳନ କରାଯାଏ ।

କିନ୍ତୁ ଭଦ୍ର ଘରର ପିଲାଙ୍କୁ ତାଙ୍କ ମୁରବୀମାନେ ଏ ସବୁ ଦେଖି ଯିବାକୁ ମନା କରନ୍ତି । ହେଲେ ମୁଁ କୌଣସିମତେ ଏ ସବୁ ଦେଖିବା ସୁଯୋଗ ଛାଡ଼େ ନାହିଁ । ସେଥିପାଇଁ ମୋର ଆଈ, ମାମୁଁ ଏବଂ ମାମୁଁଙ୍କର ପିଲାମାନେ ମୋ ଉପରେ ବିରକ୍ତ ହୁଅନ୍ତି । କିନ୍ତୁ ମୁଁ ରାତିରେ ଦେଖିଥିବା ନାଟକ ଇତ୍ୟାଦିର ଅନୁକରଣ କରି ତା ସହିତ ଗୀତର କେତେକ ପଦ ଯୋଡ଼ି ଗାଇବା ଓ ଦେଖାଇବାରେ ସେମାନେ ମନେ ମନେ ଖୁସୀ ହୁଅନ୍ତି ।

ତା'ପରେ ଉଚ୍ଚ ଶିକ୍ଷା ପାଇଁ ସହରର ବୋର୍ଡିଂରେ ଆସି ରହିଲି । ସେଠାରେ ମଧ୍ୟ ସାଙ୍ଗମାନଙ୍କ ମେଳରେ, ଏପରିକି ସ୍କୁଲରେ ମଧ୍ୟ ମୁଁ ଭଲ କଣ୍ଠରେ ଗୀତ ଗାଇ ପ୍ରଶଂସା ପାଉଥିଲି ।

ସେହି ସମୟରେ ୧୯୨୪ ମସିହା ଜାନୁୟାରୀ ୨୬ ତାରିଖରେ ଗାନ୍ଧିଜୀଙ୍କ ଡାକରାରେ ସାରା ଭାରତ ବର୍ଷରେ ସ୍ୱାଧୀନତା ଲାଗି ସମସ୍ତେ ଶପଥ ଗ୍ରହଣ କଲେ । ସେହିଦିନଠାରୁ ୧୯୩୧ ମସିହାର 'ଗୋଲ ଟେବୁଲ' ବୈଠକ ପର୍ଯ୍ୟନ୍ତ ଆମ୍ଭେମାନେ ବରାବର ଶୋଭାଯାତ୍ରା ପ୍ରଭାତଫେରି ଇତ୍ୟାଦିରେ ଗୀତ ଗାଇ ଗାଇ ବୁଲୁ । ସେହି ସମୟର ସ୍ୱାଧୀନତା ସଂଗ୍ରାମର ଅନେକଗୁଡ଼ିଏ ଗୀତ ଆଜି ପର୍ଯ୍ୟନ୍ତ ମୋର ମନେ ରହିଛି ।

୧୯୩୪ ମସିହାରେ ହଠାତ୍ ମୋତେ କଟକ ଆସି ରହିବାକୁ ପଡ଼ିଲା । ୧୯୩୪ରୁ ୧୯୪୨ ମସିହା ପର୍ଯ୍ୟନ୍ତ କଟକରେ ରାଜସ୍ଥାନରୁ ଆସୁଥିବା 'ନବଟଙ୍କୀ' ଦଳ, ମୋହନ ଗୋସ୍ୱାମୀଙ୍କର ରାହାସ ଦଳ ଏବଂ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଓଡ଼ିଶା ଥିଏଟରର ନାଟକାଦି ସବୁ ସମୟରେ ଦେଖିବାର ସୁଯୋଗ ପାଏ । ଏପରି ଭାବରେ ମୋର ନୃତ୍ୟଗୀତାଦି ପ୍ରତି ଆକର୍ଷଣ ବଢ଼ି ବଢ଼ି ଚାଲିଲା ।

୧୯୪୨ ମସିହାରେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାପରେ ମୁଁ ହଠାତ୍ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହୋଇପଡ଼ିଲି ଓ ସେଥିପାଇଁ ମୋତେ ମିରଜ ଯାଇ ରହିବାକୁ ପଡ଼ିଲା । ମହାରାଷ୍ଟ୍ରର ଏହି ମିରଜ ସହର ଗୀତ ବାଦ୍ୟର ଗୋଟିଏ ପ୍ରଧାନ ପୀଠ ଏବଂ ମୋର ଏହି ପୀଡ଼ିତାବସ୍ଥାରେ ମୁଁ ସେଠାରେ ଓସ୍ତାଦଙ୍କ ପାଖରେ ତବଲାଟୁବା ଶିଖୁଥାଏ । ନିଜେ ହାରମୋନିୟମ ବଜାଇ ଗୀତ ଗାଉଥାଏ ।

ଆରୋଗ୍ୟ ଲାଭ ପରେ କିଛି ଦିନ ମୋ ଜନ୍ମସ୍ଥଳୀରେ କଟାଇଲି । ସେତେବେଳେ ସାଙ୍ଗମାନଙ୍କୁ ଭେଟିବା ପାଇଁ ଆଖପାଖ ବା ଦୂରକୁ ବିଭିନ୍ନ ଗାଁକୁ ଗିବାବେଳେ ସାଙ୍ଗରେ ହାରମୋନିୟମ ବାକ୍ସ ନେବାକୁ ଭୁଲେ ନାହିଁ । ସେଥିପାଇଁ ସାଙ୍ଗମାନଙ୍କ ପରିହାସର ପାତ୍ର ମଧ୍ୟ ହୋଇଛି । ହେଲେ ମୋର ଏ ଏକ ନିଶା । ତେଣୁ ଛାଡ଼ିବା ସହଜ ନୁହେଁ । ୧୯୪୪ ମସିହାରେ ମୁଁ କଟକ ଫେରିଲି ଓ ଦୁଇବର୍ଷ କଂଗ୍ରେସର ପତାକା ତଳେ ରହିବା ପରେ ସେତେବେଳର ନୂଆ ହୋଇ ଗଢ଼ା ଯାଉଥିବା ସୋସାଲିଷ୍ଟ ପାର୍ଟିରେ ଯୋଗଦେଲି । ଏହି ଦଳର ସାଂସ୍କୃତିକ ବିଭାଗ ଖୋଲା ହେବାର ସ୍ଥିର ହେଲା । ତେଣୁ ସେତେବେଳର 'ଜନ ସଂସ୍କୃତି ସଂଘ'ର ଆବିର୍ଭାବ । ବନ୍ଧୁ ଶ୍ରୀ ଶାରଦା ପ୍ରସନ୍ନ ନାୟକ ଓ ମୋର ବରିଷ୍ଠ ବନ୍ଧୁ ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି ପ୍ରଭୃତି ଏ ସଂଘର ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ଥିଲେ । ଏହି ସାଂସ୍କୃତିକ ଶାଖା ଜରିଆରେ ଅନେକଗୁଡ଼ିଏ ନାଟକ ପରିବେଷଣ କରାଗଲା । ପ୍ରଥମ ନାଟକଟି ଶ୍ରୀ ମନୋରଞ୍ଜନ ଦାସଙ୍କର 'ଅଗଷ୍ଟ ୯' । ଏହାକୁ ପରିଚାଳନା କଲେ ନିତାଇ ଦା (ଶ୍ରୀ ନିତାଇ ପାଲିତ—ଆଜିର ବରିଷ୍ଠ ଚଳଚ୍ଚିତ୍ର ନିର୍ଦ୍ଦେଶକ) । ଗୌର ବାବୁ (ଗୌର ଘୋଷ) ଥିଲେ ମୁଖ୍ୟ ନାୟକ । ମୁଁ ଜଜ୍ ଭୂମିକାରେ ଅଂଶ ଗ୍ରହଣ

କରିଥିଲି ଏବଂ ବର୍ତ୍ତମାନ ଟେଲିଭିଜନ ସେଣ୍ଟରର ଷ୍ଟେସନ ଡାଇରେକ୍ଟର ରଫିକ ସାହେବ ଥିଲେ ଔକଲ ।

ତା'ପରେ ବଇଷ୍ଣବଙ୍କର ଲେଖା 'ବାଜିରାଉତ' ପରିବେଷଣ କରାଗଲା । ସେଥିରେ ମଧ୍ୟ ମୁଁ ଏବଂ କଟକର ଅନେକ ବନ୍ଧୁମାନେ ଭାଗ ନେଇଥିଲୁ ।

ଶାରଦାବାବୁ, ସନତ୍ବାବୁ, ଏବଂ ଆହୁରି ଅନେକ ବନ୍ଧୁମାନେ ମିଶି ହାରମୋନିୟମ୍ ତୁବିତାବଲା ଧରି କଟକ ସହରରେ ବୁଲି ବୁଲି ସୋସାଲିଷ୍ଟ ପାର୍ଟି ପାଇଁ ପାଣ୍ଠି ସଂଗ୍ରହ କରୁ । ପୁରୀ ଇତ୍ୟାଦି ବଡ଼ ସହରମାନଙ୍କର ମଧ୍ୟ ଶୋଭାଯାତ୍ରାରେ ଗୀତ ଗାଇ ଚାନ୍ଦା ଆଦାୟ କରୁଥିଲୁ ।

ଏହି ଜନ ସଂସ୍କୃତି ସଂଘରେ ମନୋରଞ୍ଜନ ବାବୁ ନିତାଇଦା, ଶାରଦା ବାବୁ, ବଇ ଭାଇ, ଗୌରିବାବୁ, ଧୀରବାବୁ, ଶ୍ରୀ ଗୋବିନ୍ଦ ତେଜ, ସଚିବାବୁ, ଅକ୍ଷୟବାବୁ, ବ୍ରଜବାବୁ, ଚପଲା ଦେବୀ, ଶ୍ଲୋରିଆ ଦେବୀ, ରାଜେଶ୍ବରୀ ଓ ବ୍ରଜେଶ୍ବରୀ ଦଳବେହେରା ପ୍ରଭୃତି ବହୁ ଲେଖକ, ନିର୍ଦ୍ଦେଶକ ଓ କଳାକାର ଯୋଗ ଦେଇଥିଲେ, ଯେଉଁମାନେ କି ଆଜି ଓଡ଼ିଶାର ସଂସ୍କୃତି କ୍ଷେତ୍ରରେ ବିଶେଷ ପ୍ରସିଦ୍ଧି ଲାଭ କରିଛନ୍ତି ।

ସେତେବେଳେ ଆକାଶବାଣୀ କେନ୍ଦ୍ର ପ୍ରଥମ କରି କଟକରେ ଖୋଲାହେଲା । ଏହି ସଂଘର ପ୍ରାୟ ସମସ୍ତ ସଭ୍ୟ ଆକାଶବାଣୀର କଳାକାର, ବାର୍ତ୍ତା ପରିବେଷକ କିମ୍ବା ପଦସ୍ଥ କର୍ମଚାରୀ ହିସାବରେ ଯୋଗଦେଲେ ।

ଉନ୍ନତି ପରେ ଅବନତି ଘଟିଥାଏ । ଏହି ସଂଘରେ ମତଭେଦ ହେବାରୁ କେତେକ ବନ୍ଧୁ ଅଲଗା ହୋଇଗଲେ ଏବଂ ସେମାନେ 'ୟୁନାଇଟେଡ଼ ଆର୍ଟିଷ୍ଟସ୍' ନାମକ ଆଉ ଗୋଟିଏ ସଂସ୍ଥା ଗଠନ କଲେ । ସେଥିରେ ମଧ୍ୟ ମୁଁ ଜଣେ ପୃଷ୍ଠପୋଷକ ଭାବେ ରହିଥିଲି । ଏ ସଂସ୍ଥା କିନ୍ତୁ ବେଶୀ ଦିନ ତିଷ୍ଠି ପାରିଲା ନାହିଁ ।

ସେ ସମୟରେ ଭାରତୀୟ ଲଳିତକଳା କେନ୍ଦ୍ର ନାମକ ଗୋଟିଏ ସଙ୍ଗୀତ ଅନୁଷ୍ଠାନ କାଜିବଜାରର କ୍ଷିତୀଶଚନ୍ଦ୍ର ରାୟଚୌଧୁରୀଙ୍କ ଘରେ ଖୋଲା ହେଲା । ଏହି ଅନୁଷ୍ଠାନରେ ସଙ୍ଗୀତ ଶିକ୍ଷକ ହିସାବରେ କାର୍ଯ୍ୟ କରୁଥିଲେ ଶ୍ରୀ ବିଶ୍ବନାଥ ରାଓ ଓ ନୃତ୍ୟ ଶିକ୍ଷକ ହିସାବରେ କାର୍ଯ୍ୟ କରୁଥିଲେ ୬ ଅଜିତ ଘୋଷ । ଏହି ସଙ୍ଗୀତ ଅନୁଷ୍ଠାନରେ ବହୁ ଛାତ୍ରଛାତ୍ରୀ ଯୋଗଦେଲେ, କିନ୍ତୁ ଅର୍ଥ ଓ ଉତ୍ସାହ ଅଭାବରୁ ଏହା ମଧ୍ୟ ବନ୍ଦ ହୋଇଗଲା ।

ଅନେକ ଚିନ୍ତା କଲାପରେ ମୁଁ ଏପରି ଏକ ଅନୁଷ୍ଠାନ ଗଢ଼ିବା ପାଇଁ ମନସ୍ଥ କଲି ଯାହାକି ରାଜନୀତିର ଦୂଷିତ ବାତାବରଣଠାରୁ ଦୂରରେ ରହିଲେ ମଧ୍ୟ, ପରୋକ୍ଷ

ଭାବରେ ସ୍ୱାଧୀନତା ଆନ୍ଦୋଳନରେ ସାହାଯ୍ୟକାରୀ ହୋଇ ପାରିବ । ତେଣୁ ହେଲା 'କଳା ବିକାଶ କେନ୍ଦ୍ର'ର ଜନ୍ମ ।

## ପ୍ରଥମ କେତେ ଦିନ—

ଶ୍ରୀମାନ୍ ଗୁଣାଲବାବୁ, ଜଗ୍ନୀବାବୁ ଓ ମୁଁ ଆମେ ତିନ ଜଣ ଗୁରୁ ବିଶ୍ୱନାଥ ରାଓଙ୍କ ପାଖରେ ଯାଇ ଗୀତ ବାଦ୍ୟ ଅଧ୍ୟୟନ କରୁ ଓ ଶ୍ରୀ ରାମ ପ୍ରସାଦ ମହାନ୍ତି ଓ ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି (ବଇ ଭାଇ) ଜେଲରୁ ଖଲାସ ହୋଇ ଆସି ମୋ ଘରେ କଟକରେ ରହୁଥାଆନ୍ତି । ସୁତରାଂ ବିଶ୍ୱନାଥ ବାବୁ ଓ ଏମାନଙ୍କ ପାଖରେ ମୋ କଥା ମୁଁ ଉପସ୍ଥାପିତ କଲି ଏବଂ ସମସ୍ତେ ଏହିପରି ଏକ ଅନୁଷ୍ଠାନର ଆବଶ୍ୟକତା ଉପଲବ୍ଧି କଲେ । ଶ୍ରୀଯୁକ୍ତ ଶ୍ୟାମ ସୁନ୍ଦର ମିଶ୍ରଙ୍କୁ ମୁଁ ଓ ବଇଭାଇ ସାଙ୍ଗରେ ନେଇ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ଘରକୁ ଗଲୁ ଏବଂ ତାଙ୍କୁ ଏହି କେନ୍ଦ୍ରର ସଭାପତି ହେବାପାଇଁ ରାଜି କରାଇଲୁ ।

ସେତେବେଳେ ଓଡ଼ିଆ ବଜାରର ଯଦୁନାଥ ଭବନର ଭଡ଼ାଘରେ ମୁଁ ରହୁଥିଲି ଏବଂ ସେଠାରେ ଥିଲା ସୋସାଲିଷ୍ଟ ପାର୍ଟିର ମୁଖ୍ୟ କାର୍ଯ୍ୟାଳୟ ଯାହାକି ଆଜି ପର୍ଯ୍ୟନ୍ତ ସେହିଠାରେ ଅଛି । ସେହିଘର ସମ୍ମୁଖରେ ଗୌରବାବୁଙ୍କ ଘର ମାସିକ ୨୫ ଟଙ୍କା ଭଡ଼ାରେ ନିଆଗଲା ଏବଂ ୧୯୫୬ ମସିହା ଅଗଷ୍ଟ ମାସ ୧୦ ତାରିଖ ଦିନ କଳାବିକାଶ କେନ୍ଦ୍ରର ବିଧିବଦ୍ଧ ସ୍ଥାପନା ଘୋଷଣା କରାଗଲା । ଏହାର ସମ୍ବିଧାନ ତିଆରି କରିବାରେ ଶ୍ରୀ ଗୋବିନ୍ଦ ଦାସ, ବାଙ୍କବାବୁ (ଶ୍ରୀ ବାଙ୍କ ବିହାରୀ ଦାସ) ଓ ଶ୍ରୀ ଦେବୀ ପ୍ରସନ୍ନ ପଟ୍ଟନାୟକ ପ୍ରଭୃତି ସାହାଯ୍ୟ କଲେ । ସେଥିପାଇଁ ଅନୁଷ୍ଠିତ ପ୍ରଥମ ବୈଠକରେ ଅନେକ କଳାକାର ଓ କଳାପ୍ରେମୀ ଯୋଗ ଦେଇଥିଲେ । ତନ୍ମଧ୍ୟରୁ ଶ୍ରୀମତୀ ସୁଷମା ଦେବୀ, ଶ୍ରୀ ସୁରଞ୍ଜନ ରାୟ, ଶ୍ରୀ ମନୋରଞ୍ଜନ ଦାସଙ୍କ ନାମ ଉଲ୍ଲେଖ ଯୋଗ୍ୟ । ସୋସାଲିଷ୍ଟ ଦଳର ସାଂସ୍କୃତିକ ଶାଖାର କେତେକ ବନ୍ଧୁ ମଧ୍ୟ ଏ ବୈଠକରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ ଅଭୟ ବାବୁ ଓ ନକୁଳୀ ଭାଇ ପ୍ରଥମେ ଅଫିସ କାର୍ଯ୍ୟରେ ସହଯୋଗକଲେ । ବଇଭାଇଙ୍କ ପରାମର୍ଶ କ୍ରମେ ଅନ୍ନପୂର୍ଣ୍ଣାର ମାୟାଧର ବାବୁଙ୍କୁ ମାସିକ ୧୫ ଟଙ୍କା ବେତନରେ ଶିକ୍ଷକ ରୂପେ ନିଯୁକ୍ତ କରାଯାଇ ନୃତ୍ୟ ଶିକ୍ଷା ଆରମ୍ଭ କରାଗଲା ।

ସେତେବେଳେ ମୁଁ କଟକର ଗୁଜରାଟୀ ସମାଜର ସମ୍ପାଦକ ଥିଲି ଏବଂ ସେହି ସମାଜ ପକ୍ଷରୁ ନବରାତ୍ର, କୁମାର ପୂର୍ଣ୍ଣିମା, ଦୀପାବଳି ଉତ୍ସବ ଇତ୍ୟାଦି ପ୍ରତି ବର୍ଷ ମହାସମାରୋହରେ ପାଳନ କରାଯାଏ । ଏହି ସବୁ ଉତ୍ସବରେ ଅନେକ ଗୁଜରାଟୀ ଯୁବକ ଯୁବତୀ ଯୋଗ ଦେଉଥିଲେ ଏବଂ ସେମାନଙ୍କ ମଧ୍ୟରୁ କେତେକ

ଝିଅ ପ୍ରଥମେ କେନ୍ଦ୍ରର ନୃତ୍ୟ ବିଭାଗରେ ନାମ ଲେଖାଇଲେ । ଧୀରେ ଧୀରେ ଆଖପାଖ ଅଞ୍ଚଳର ଝିଅମାନେ ଆସି ନୃତ୍ୟ ବିଭାଗରେ ଯୋଗଦେଲେ । ତାଙ୍କ ମଧ୍ୟରେ ଥିଲେ ସାଧନା, ମୀରା, କଲ୍ୟାଣୀ, ସୁଷମା, ପ୍ରତିମା, ସୁରମା, ମଞ୍ଜୁ, ଅଞ୍ଜଳୀ, ବାସନ୍ତୀ, କମଳା ପ୍ରଭୃତି ।

କିଛିଦିନ ପରେ ଦୟାନିଧିବାବୁ, ଚନ୍ଦ୍ରବାବୁ ଇତ୍ୟାଦି ବହୁ ସଙ୍ଗଠକ ବୃନ୍ଦ ଆସି ଅନୁଷ୍ଠାନରେ ଯୋଗଦେଲେ । ୰ ମାଧବନନ୍ଦ, ୰ ରାଜଗୋବିନ୍ଦ ଘୋଷ, ଶ୍ରୀ ଆର୍ତ୍ତତ୍ରାଣ ନନ୍ଦ, ଶ୍ରୀ ବୈଦ୍ୟନାଥ ମିଶ୍ର, ଶ୍ରୀ ହରିହର ମିଶ୍ରଙ୍କ ପରି ବହୁ ଅଭିଭାବକ ମଧ୍ୟ ସ୍ୱେଚ୍ଛାରେ ଆସି ସକ୍ରିୟ ସାହାଯ୍ୟ କଲେ । ନୃତ୍ୟଗୀତାଦି ବ୍ୟତୀତ ପିଲାଙ୍କର ଖେଳ କସରତ ପ୍ରତିଯୋଗିତା ଇତ୍ୟାଦିର ଆୟୋଜନ ହେବାରୁ କଟକ ସହରର ବହୁ ଅଞ୍ଚଳର ବହୁ ପିଲା ଆସି ଏଥିରେ ଯୋଗଦେଲେ । କ୍ରୀଡ଼ା ପ୍ରତିଯୋଗିତା ଇତ୍ୟାଦିରେ ଉତ୍ସାହୀ ଜଣେ ବନ୍ଧୁଙ୍କୁ ଦିନେ ଦୟାନିଧିବାବୁ ଆଣି ମୋ ସହିତ ପରିଚିତ କରାଇଲେ । ସେ ହେଲେ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାସ । ସେହି ଦିନରୁ ସେ ଆଜଯାଏ କେନ୍ଦ୍ର ସହିତ ସମ୍ପୃକ୍ତ ହୋଇ ରହିଛନ୍ତି । ଶାରୀରିକ ଅସୁସ୍ଥତା ଯୋଗୁ ଓ କେନ୍ଦ୍ରର ଗୃହ କଳହ ସମୟରେ ସେ କେତେଦିନ ନୀରବ ହୋଇ ରହିଲେ ମଧ୍ୟ ମୋ ସହିତ ବ୍ୟକ୍ତିଗତ ସୁସମ୍ପର୍କ ବଜାୟ ରଖିଥିଲେ । ଆଜି ସେ ଅନୁଷ୍ଠାନର ଜଣେ ସହ ସମ୍ପାଦକ ଓ ସକ୍ରିୟ ସାଥୀ ।

କେନ୍ଦ୍ରର କାର୍ଯ୍ୟାଳୟ ସମ୍ମୁଖରେ ଗୋଟିଏ ପଡ଼ିଆ ଥିଲା । ପ୍ରତିଦିନ ସକାଳେ ଉଠି ଦୟାନିଧିବାବୁ, ମୁଁ, ବଇଭାଇ ଏବଂ ସାହିର ନନିଆ ଦରଜି ଇତ୍ୟାଦି ଅନ୍ୟ ଲୋକ ମିଶି ତାକୁ ସଫା କରୁ । ଏହି ପଡ଼ିଆରେ ପରେ ପରେ ପ୍ରଥମ କ୍ରୀଡ଼ା ପ୍ରତିଯୋଗିତା କରାଗଲା ଏବଂ ଶ୍ରୀ ରାଧାନାଥ ରଥ ଏଥିରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇ କେନ୍ଦ୍ରକୁ ୧୦୦ ଟଙ୍କା ଦାନ କରିଥିଲେ । ସେତେବେଳର ରାଜସ୍ୱ ବୋର୍ଡ଼ ସଭ୍ୟ ଶ୍ରୀ ନୀଳମଣି ସେନାପତି କାର୍ଯ୍ୟାଳୟରେ ପଙ୍ଖା ଲଗାଇବା ପାଇଁ ୧୫୦ ଟଙ୍କା ଦାନ କରିଥିଲେ । ସେହିପରି ତତ୍କାଳୀନ ରାଜସ୍ୱ ମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ ତାଙ୍କର ହାତ ପାଣ୍ଠିରୁ ୨୦୦ ଟଙ୍କା ଦାନ କଲେ । ଏହି ତିନିଜଣ ହେଲେ କେନ୍ଦ୍ରର ପ୍ରାରମ୍ଭ ବର୍ଷର ପୃଷ୍ଠପୋଷକ ।

## ପରିଚାଳନା—

ଛାତ୍ର ଛାତ୍ରୀଙ୍କଠାରୁ ଦରମା ଭାବେ ଆଦାୟ କରାଯାଉଥିଲା ମାସିକ ମାତ୍ର ୧ ଟଙ୍କା । ତାହା ମଧ୍ୟ ସେମାନେ ଠିକ୍ ସମୟରେ ଦିଅନ୍ତି ନାହିଁ । ତେଣୁ କେନ୍ଦ୍ରର ସକଳ କାର୍ଯ୍ୟ ଆମ୍ଭେମାନେ ସ୍ୱହସ୍ତରେ କରୁ । ବେଳେବେଳେ ମାୟାଧର ବାବୁଙ୍କ ପରି

ଶିକ୍ଷକମାନଙ୍କର ୧୫ ଟଙ୍କା, ୨୦ ଟଙ୍କା ମାସିକ ଦରମା ମଧ୍ୟ ଜୁଟେ ନାହିଁ । କିନ୍ତୁ ମନରେ ଅଦମ୍ୟ ଉତ୍ସାହ—କେନ୍ଦ୍ର ନିଶ୍ଚୟ ଗୃହ ରହିବ । ସେଥିପାଇଁ ଆରମ୍ଭ କଲୁ ସହରରେ ପାଣ୍ଠି ଆଦାୟ ଓ ସଭ୍ୟ ସଂଗ୍ରହ ଅଭିଯାନ । କିନ୍ତୁ ଅଭିଯାନ କେବଳ ପଥଶ୍ରମରେ ହିଁ ପର୍ଯ୍ୟବସିତ ହୁଏ । ସକାଳୁ ଦାଣ୍ଡାର ଦ୍ୱିପ୍ରହର ପର୍ଯ୍ୟନ୍ତ ବହୁତ ବୁଲିଲେ ବି କିଛି ମିଳେ ନାହିଁ । ବୁଲି ବୁଲି ଏକ ସମୟରେ ଭଗତପୁରର ଜଣେ କଣ୍ଟ୍ରାକ୍ଟରଙ୍କ ଘରେ ପହଞ୍ଚିଲୁ । ସେ ଆଦରର ସହିତ କଥା ଶୁଣିଲେ । ସଭ୍ୟ ହେବା ପାଇଁ ରାଜି ହୋଇ ଦରଖାସ୍ତ ପତ୍ର ପୂରଣ କଲେ । ଆମ ଆନନ୍ଦ ଉତ୍ସାହ କହିଲେ ନସରେ । କିନ୍ତୁ ହାୟ !, ଟଙ୍କା ଦେବାବେଳକୁ କହିଲେ "ଆପଣ ପନ୍ଦର ଦିନ ପରେ ଆସନ୍ତୁ, ଟଙ୍କା ନେବେ" । ଆନନ୍ଦର ଜୁଆରରେ ଭଟ୍ଟା ପଡ଼ିଗଲା । ଶୂନ୍ୟ ହସ୍ତରେ ଫେରିଲୁ ।

ସେପରି ଆଉ ଗୋଟିଏ ଦୃଷ୍ଟାନ୍ତ । କେନ୍ଦ୍ରର ବାର୍ଷିକ ଉତ୍ସବ ପାଇଁ ସେତେବେଳର ଆଇ. ଜି ଶ୍ରୀ ବୈଷ୍ଣବ ଚରଣ ଦାସଙ୍କ ପରି ବହୁ ଲୋକଙ୍କୁ ଧରି ଆଡ଼ମ୍ବରରେ ଚାନ୍ଦା ମାଗିବାକୁ ଗଲୁ । ରାଜା ବୋଲାଉଥିବା ଓଡ଼ିଶାର ଜଣେ ବଡ଼ ଜମିଦାରଙ୍କ ଘରେ ବହୁ ଆଶା ନେଇ ପହଞ୍ଚିଲୁ । ରାଜା ସାହେବ ଦୁଇ ଘଣ୍ଟା ଧରି କଳା ଚର୍ଚ୍ଚା କଲେ । ଭାବିଲୁ ଏଠାରେ ମୋଟା ସାହାଯ୍ୟ ମିଳିବ । ଶେଷରେ ଗୋଟିଏ ପାହୁଲା ଦେଲେ ନାହିଁ କିମ୍ବା ପାଣି ଗିଲାସେ ବି ଯାଚିଲେ ନାହିଁ ।

ଏହିପରି ନାନା ଅଭିଜ୍ଞତା । ଅନେକ କଥା ମନେ ପଡ଼ିଲେ ହସିଲାଗେ । କିନ୍ତୁ ଏକ ଅନୁଷ୍ଠାନକୁ ବଞ୍ଚାଇବାକୁ ହେଲେ ନାନା ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥାଏ । କୌଣସି ସମୟରେ ଭାଙ୍ଗି ପଡ଼ିଲେ, ଆଉ ଆଗକୁ ଯିବା ସହଜ ନୁହେଁ ।

## ବଟଣ୍ଟାନୁଷ୍ଠାନ—

କିଛିଦିନ ପରେ ସେତେବେଳର ସେଣ୍ଟେଟଲ୍ ଏଟ (ଅଜର ସିଟି ହସପିଟାଲ) ରେ ଫଳପୁଷ୍ପ ପ୍ରଦର୍ଶନୀ ଉପଲକ୍ଷେ ନୃତ୍ୟଗୀତ ପରିବେଷଣ କରିବା ପାଇଁ ଆମକୁ ଡକାଗଲା । ସମୁଦାୟ କାର୍ଯ୍ୟକ୍ରମ ପାଇଁ ଆମକୁ ଦେଲେ ମାତ୍ର ୮ ଟଙ୍କା । ତା'ପରେ ସ୍ୱଳ୍ପ ସଞ୍ଚୟ ଯୋଜନା ଉପଲକ୍ଷେ ଟାଉନହଲରେ ଗୋଟିଏ ସାଂସ୍କୃତିକ କାର୍ଯ୍ୟ-କ୍ରମରେ ଆମ୍ଭମାନଙ୍କୁ ଡାକିଲେ ଏବଂ ସେଥିରେ ଦୟାକରି ଆମ୍ଭମାନଙ୍କୁ ଦେଲେ ୧୫ ଟଙ୍କା ।

ଏହିପରି କାର୍ଯ୍ୟକ୍ରମରେ ଆମର କିଛି ଖର୍ଚ୍ଚ ହୁଏ ନାହିଁ । ହାରମୋନିୟମ, ଢୋଲ ତବଲା ନିଜ ହାତରେ ଧରି ପିଲାମାନଙ୍କୁ ନେଇ ଗଲି ଗଲି ସେହିସବୁ ସ୍ଥାନମାନଙ୍କୁ

ଯାଉ । କିନ୍ତୁ ମନରେ କି ଉତ୍ସାହ ! ମୁଁ ନିଜେ ବାଁ ହାତରେ ହାରମୋନିୟମ ବଜାଏ । ସମବେତ ଗୀତ ପରିଚାଳନା କରେ । ପିଲାମାନେ ଅଳ୍ପ ଦିନରେ ଯାହା ଶିଖି ଥାଆନ୍ତି ତାହା ପ୍ରଦର୍ଶନ କରନ୍ତି । ଅନେକ ସମୟରେ ନାଚଗୀତ ଭୁଲଭାଲ ହୁଏ । କିନ୍ତୁ ସେତେବେଳେ ଦର୍ଶକ ବୃନ୍ଦ ସେ ସବୁକୁ ସହଜ ଭାବେ ଗ୍ରହଣ କରନ୍ତି ଓ ଖୁସୀ ମନରେ ପିଲାଙ୍କ ନାଚଗୀତ ଦେଖି ପ୍ରୋତ୍ସାହନ ଦିଅନ୍ତି ।

ସେ ସମୟର ଗୋଟିଏ ମଜା ଘଟଣା । ଶ୍ରୀମତୀ ସାଧନା ବୋଷ (ସ୍ୱର୍ଗତ), ଯେ କି ପରେ ନୃତ୍ୟ ଜଗତରେ ଖୁବ ନାମ କଲେ, ସେତେବେଳେ ଆମ କେନ୍ଦ୍ରର ଛାତ୍ରୀ ଥାଆନ୍ତି । ସେ ଉପରୋକ୍ତ ଟାଉନହଲ କାର୍ଯ୍ୟକ୍ରମରେ ତାଙ୍କ ନୃତ୍ୟ ପ୍ରଦର୍ଶନ କରିବାକୁ ଯାଇଥିଲେ । ନୃତ୍ୟ ଆରମ୍ଭ କଲେ । କିନ୍ତୁ ମିନିଟିକ ପରେ ନାଚର ବୋଲ ଭୁଲିଯିବାରୁ ଠିଆ ହୋଇପଡ଼ିଲେ । ସେହିପରି ଫଲପୁଷ୍ପ ପ୍ରଦର୍ଶନୀରେ ମଧ୍ୟ ଗୋଟିଏ ସମବେତ ନୃତ୍ୟ ପରିବେଷଣ କରାଯାଇଥିଲା ଏବଂ ସେଥିରେ ପ୍ରଧାନ ନାୟିକା ଭାବରେ ଅଂଶ ଗ୍ରହଣ କରିଥିଲେ ଶ୍ରୀମତୀ ସୁଷମା ଦାସ । ଧଳା ପୋଷାକ ପିନ୍ଧି ସମସ୍ତ ଭୁଲଭାଲ ନାଚିଲେ । ଏ ସବୁ ଘଟଣା ଦର୍ଶକଙ୍କୁ ବେଶ୍ ଆମୋଦ ଦେଉଥିଲା । ସେମାନେ ପିଲାମାନଙ୍କୁ କୌଣସି ଭାବେ ନିରୁତ୍ସାହିତ କରୁନଥିଲେ । ଏହିପରି ଗୋଟିଏ କାର୍ଯ୍ୟକ୍ରମରେ ଆମର ସଙ୍ଗୀତ ଶିଳ୍ପୀ କୁମାରୀ ଅନୁପମା ହାଜରା ଗୀତ ଗାଉଥିଲେ । ମଝିରେ ତାଲ ଭୁଲ ଯିବାରୁ ଗୀତର ପଦ ମଧ୍ୟ ଭୁଲିଗଲେ । ସୁତରାଂ ମଝିରେ ଗୀତ ବନ୍ଦ କରିବାକୁ ପଡ଼ିଲା । କିନ୍ତୁ ସେ ଟିକିଏ ହେଲେ ବିଚଳିତ ହେଲେ ନାହିଁ ଏବଂ ଦର୍ଶକ ବୃନ୍ଦଙ୍କୁ ହାତଯୋଡ଼ି କ୍ଷମା ପ୍ରାର୍ଥନା କରି କହିଲେ 'ଆଜ୍ଞା ଆମେ ଶିଶୁ ଶିଳ୍ପୀ, ମୋର ଭୁଲ୍ ଆପଣ ଧରିବେ ନାହିଁ ।' ସେଥିକରେ ଦର୍ଶକ ବୃନ୍ଦ ଆନନ୍ଦ ବିଭୋର ହୋଇପଡ଼ିଲେ ।

ସେ ସମୟରେ କେନ୍ଦ୍ରର ପ୍ରତ୍ୟେକ ଛାତ୍ର ଛାତ୍ରୀ ଏହିପରି ଚାଲାକ ଚତୁର ଥିଲେ ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଆଜି ସଙ୍ଗୀତ, ନୃତ୍ୟ ବା ନାଟ୍ୟ କଳାରେ ଶ୍ରେଷ୍ଠନାମ ଅର୍ଜନ କରିଛନ୍ତି ।

ସେ ସମୟରେ ପିଲମାନେ ଗୋଲଆ ମିଶା ଭାବେ ନାଚ ଶିଖୁଥିଲେ । ଓଡ଼ିଶୀ, ମଣିପୁରୀ, କଥକ, ପଲ୍ଲୀ ନୃତ୍ୟ ପ୍ରଭୃତି ଏକା ସାଙ୍ଗରେ ଶିକ୍ଷା ପାଉଥିଲେ ।

## ବିଦେଶ ଯାତ୍ରା—

ଏହିପରି ପ୍ରାୟ ଛଅ ମାସ ଅଭାବ ଅସୁବିଧାରେ କଟାଇବା ପରେ ମୋତେ ହଠାତ୍ ରେଙ୍ଗୁନ ଯିବାକୁ ପଡ଼ିଲା । ୧୯୫୨ ମସିହା ଡ଼ିସେମ୍ବର ୩୦, ୩୧ ଓ ୧୯୫୩

ମସିହା ଜାନୁଆରୀ ମାସ ୧ ତାରିଖ ଏହିପରି ଉନଦନ 'ଏସିୟାନ୍ ସୋସାଲିଷ୍ଟ କନଫରେନ୍ସ' ରେଙ୍ଗୁନରେ ବସିଥିଲା । ସେଠାର ତଦାନୀନ୍ତନ ପ୍ରଧାନମନ୍ତ୍ରୀ ଉନୁ ଥିଲେ ଏହାର ପୃଷ୍ଠପୋଷକ ଏବଂ ସ୍ୱରାଷ୍ଟ୍ର ବିଭାଗ ମନ୍ତ୍ରୀ ଉବା ସ୍ୱେ ଥିଲେ ସ୍ୱାଗତ ସମିତିର ଅଧ୍ୟକ୍ଷ । ପୃଥିବୀର ବହୁ ସୋସାଲିଷ୍ଟ ରାଷ୍ଟ୍ରର ନେତାମାନେ ଏଥିରେ ଯୋଗ ଦେଇଥିଲେ । ବ୍ରିଟିଶ ଶ୍ରମିକ ଦଳର ନେତା ଓ ସେତେବେଳର ପ୍ରଧାନମନ୍ତ୍ରୀ ଲର୍ଡ଼ ଅଟଲି ଏମାନଙ୍କ ମଧ୍ୟରେ ଅନ୍ୟତମ । ସାରା ଭାରତ ବର୍ଷରୁ ଶ୍ରୀଯୁକ୍ତ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ୯୦ ଜଣ ଭାରତୀୟ ଯୋଗ ଦେଇଥିଲେ । ଓଡ଼ିଶାରୁ ସୁରେନ୍ଦ୍ରବାବୁ, ବାଙ୍କବାବୁ, ନଶାମଣିବାବୁ, ବିଶ୍ୱନାଥବାବୁ ଇତ୍ୟାଦି କେତେ ଜଣଙ୍କ ସଙ୍ଗରେ ମୁଁ ମଧ୍ୟ ଯୋଗ ଦେଇଥିଲି । ଏହି ଦଳରେ କେବଳ ମୁଁ ଓ ଶ୍ରୀ ଅଶୋକ ମେହେଟା ଦୁଇଜଣ ଥିଲୁ ଗୁଜରାଟୀ ଏବଂ ଆମର ରହଣୀ ଭିତରେ ସେଠାର ଗୁଜରାଟୀ ସମାଜର ସ୍ୱାଗତ ସମ୍ମିଳନୀରେ ମୁଁ କଳା ବିକାଶ କେନ୍ଦ୍ର କଥା କହିଲି ଏବଂ କେନ୍ଦ୍ରପାଇଁ କିଛି ପାଣ୍ଠି ସଂଗ୍ରହ କଲି । ସେତେବେଳେ ବ୍ରହ୍ମଦେଶରୁ ଟଙ୍କା ଇତ୍ୟାଦି ଆଣିବାରେ ବହୁ କଟକଣା ଥିଲା । ସୁତରାଂ ଏ ଟଙ୍କା କଟକରେ ପହଞ୍ଚିବ କିପରି ? ଶେଷରେ ଦୁଇ ମାସ ପରେ ଉବା ସ୍ୱେଙ୍କ ଜରିଆରେ ସେ ଟଙ୍କା କଟକରେ ପହଞ୍ଚିଲା ଏବଂ ଏହି ଟଙ୍କା ଅଳ୍ପ ହେଲେ ମଧ୍ୟ ସେତେବେଳେ କେନ୍ଦ୍ର ପରିଚାଳନାରେ ଅଳ୍ପ ବହୁତେ ସାହାଯ୍ୟ କଲା ।

## ପ୍ରଥମ ବାର୍ଷିକ ଉତ୍ସବ—

୧୯୫୩ ମସିହା ଅଗଷ୍ଟ ୨୭ ତାରିଖରେ ଡକ୍ଟର ପରିଜାଙ୍କ ସଭାପତିତ୍ୱରେ କେନ୍ଦ୍ରର ପ୍ରଥମ ବାର୍ଷିକ ଉତ୍ସବ ପାଳନ କରାଗଲା ଏବଂ ଏହାକୁ ଉଦ୍‌ଘାଟନ କଲେ ସେତେବେଳର ରାଜ୍ୟପାଳ ଶ୍ରୀ ଆସଫ୍ ଅଲ୍ଲୀ । ଏଠାରେ ଗୋଟିଏ କଥା ଉଲ୍ଲେଖ କରାଯାଇ ପାରେ ଯେ ଏହା ପରେ ଆମର ସମସ୍ତ ବାର୍ଷିକୋତ୍ସବ ବରାବର ରାଜ୍ୟର ରାଜ୍ୟପାଳଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇ ଆସିଛି । ଶ୍ରୀ କୁମାର ସ୍ୱାମୀ ରାଜା, ଶ୍ରୀ ଭୀମସେନ ସାଚ୍ଚର, ଶ୍ରୀ ୱାଇ. ଏନ୍. ସୁକଣ୍ଠକର, ଶ୍ରୀ ଏ. ଏନ୍. ଖୋସଲା, ଡକ୍ଟର ଅନ୍‌ସାରୀ, ଶ୍ରୀ ଯୋଗୀନ୍ଦ୍ର ସିଂହ, ଶ୍ରୀ ବି. ଡ଼ି. ଜତ୍ତି ଓ ଶ୍ରୀ ଆକବର ଅଲ୍ଲୀ ଖାଁ ପ୍ରଭୃତି ରାଜ୍ୟପାଳମାନେ ଆମକୁ ଏ ଗୌରବ ଦେଇ ଆମର କୃତଜ୍ଞତାର ପାତ୍ର ହୋଇଛନ୍ତି ।

ଧୀରେ ଧୀରେ କଳା ବିକାଶ କେନ୍ଦ୍ରର କାର୍ଯ୍ୟ ପରିସର ଏତେ ବୃଦ୍ଧି ପାଇଲା ଯେ ମୁଁ ଆଉ ଗୁଜରାଟୀ ସମାଜର କାର୍ଯ୍ୟ ସଠିକ୍ ଭାବରେ ସମ୍ଭାଳି ପାରିଲି ନାହିଁ । ସେଥିରେ ଆକାଶବାଣୀରେ କାର୍ଯ୍ୟ କରୁଥିବା ମୋର ଜଣେ ବନ୍ଧୁ ଶ୍ରୀ ପ୍ରବୋଧ ଦେଶାଇ ଓ ସମାଜର ଅନ୍ୟାନ୍ୟ କର୍ମକର୍ତ୍ତାମାନେ ମୋ ପ୍ରତି ସନ୍ତୁଷ୍ଟ ହେଲେ ।

ଶେଷରେ ବାଧ୍ୟ ହୋଇ ଦୁଃଖର ସହିତ ମୋତେ ଗୁଳସାହି ସମାଜ ଛାଡ଼ିବାକୁ ପଡ଼ିଲା । ଏ ସମାଜର ଉନ୍ନତି ପାଇଁ କାର୍ଯ୍ୟ କରିବାରେ ମୋର ବହୁ ଅଭିଳାଷ ଥିଲେ ମଧ୍ୟ କଳା ବିକାଶ କେନ୍ଦ୍ର ପାଇଁ ମୋତେ ଏ ସିଦ୍ଧାନ୍ତ ନେବାକୁ ପଡ଼ିଲା । ଫଳରେ ସମାଜର ଉନ୍ନତିରେ ବାଧା ଉପୁଜିଲା ଏବଂ ଦୀର୍ଘ ଚଉଦ ବର୍ଷ ପରେ ମୋତେ ପୁଣି ଗୁଳସାହି ସମାଜର ଭାରନେବା ପାଇଁ ଡାକରା ଆସିଲା । ୧୯୭୦ରୁ ୧୯୭୪ ପର୍ଯ୍ୟନ୍ତ ଏହି ଚାରିବର୍ଷ ମଧ୍ୟରେ ମୁଁ ସମାଜର ଉନ୍ନତି ପାଇଁ ନାନାବିଧ ଯୋଜନା ପ୍ରସ୍ତୁତ କଲି ଏବଂ ସମାଜର ପଚଶ ବର୍ଷ ପୂର୍ତ୍ତି ଉପଲକ୍ଷେ ୧୯୭୩ ମସିହାରେ ତାହାର ରୌପ୍ୟ ଜୟନ୍ତୀ ମହାସମାରୋହରେ ପାଳନ କରାଗଲା । ସମାଜର ଉନ୍ନତି ପାଇଁ ଚାରିଆଡ଼େ ବୁଲି ୫୦,୦୦୦ ଟଙ୍କା ଚାନ୍ଦା ଆଦାୟ କଲି । ସେ ସମାଜର ଗୋଟିଏ ଟ୍ରଷ୍ଟବୋର୍ଡ଼ ତିଆରି କରି ଯୁବକମାନଙ୍କ ହସ୍ତରେ ତାହାର ଭାର ନ୍ୟସ୍ତ କରି ମୁଁ ପୁଣି କେନ୍ଦ୍ର କାର୍ଯ୍ୟରେ ସମ୍ପୂର୍ଣ୍ଣ ରୂପେ ଯୋଗଦେଲି ।

## ଦୁଃସ୍ଥ କଳାକାରଙ୍କୁ ସାହାଯ୍ୟ—

ହଠାତ୍ ଦିନେ ଶୁଣିଲୁ ଯେ ବିଖ୍ୟାତ ଶିଳ୍ପୀ ଶ୍ରୀ ବି. ବର୍ମା ପୀଡ଼ିତାବସ୍ଥାରେ ଅତି ଶୋଚନୀୟ ଭାବରେ ଦିନ କାଟୁଛନ୍ତି । ସେ ସମୟର ବିଶିଷ୍ଟ ସଙ୍ଗୀତଜ୍ଞ ଶ୍ରୀ ଡି. ଭି. ପଲୁସକର ଓ ପରେ ପରେ ପୁନା ଗାନ୍ଧର୍ବ ମହାବିଦ୍ୟାଳୟର ଅଧ୍ୟକ୍ଷ ଶ୍ରୀଯୁକ୍ତ ବିନାୟକ ରାଓ ପଟ୍ଟବର୍ଦ୍ଧନ କଟକ ଆସିବା ଅବସରରେ ଆମ କେନ୍ଦ୍ର ପରିଦର୍ଶନ କରିଥିଲେ । ଆମର ପରିଦର୍ଶନ ପୁସ୍ତିକାରେ ନିଜର ମନ୍ତବ୍ୟ ଦେଲାବେଳେ ଦୁଃସ୍ଥ କଳାକାରଙ୍କ ପ୍ରତି ଧ୍ୟାନ ଦେବାପାଇଁ ସେ ପରାମର୍ଶ ଦେଇଥିଲେ । ତେଣୁ ଆମ୍ଭେମାନେ ଠିକ୍ କଲୁ ଯେ କଳା ବିକାଶ କେନ୍ଦ୍ର ଜରିଆରେ ଦୁଃସ୍ଥ କଳାକାରମାନଙ୍କ ପାଇଁ ସାହାଯ୍ୟ ବ୍ୟବସ୍ଥା କରିବୁ । ପ୍ରଥମତଃ ବି. ବର୍ମାଙ୍କୁ ଆମ୍ଭେମାନେ ୧୧୦୦ ଟଙ୍କା ସାହାଯ୍ୟ କଲୁ । ଭାରତ ସରକାରଙ୍କ ତରଫରୁ ପରେ ପରେ ବିଜ୍ଞାପନ ବାହାରିଲା ଯେ ଏପରି ଦୁଃସ୍ଥ କଳାକାର ମାନଙ୍କୁ ସାହାଯ୍ୟ ଦିଆଯିବ । ଆମେ ଏହି ସୁଯୋଗ ନେଇ ଆମର ସଭାପତି ଡକ୍ଟର ପରିଜାଙ୍କ ପ୍ରଚେଷ୍ଟାରେ ବର୍ମାଙ୍କ ପାଇଁ ମାସିକ ୧୫୦ ଟଙ୍କା ସାହାଯ୍ୟ ମଞ୍ଜୁର କରାଇଲୁ, କିନ୍ତୁ ଶ୍ରୀ ବର୍ମା ସେତେବେଳେ ଏତେ ରୁଗ୍ଣ ହୋଇ ପଡ଼ିଥିଲେ ଯେ ସାହାଯ୍ୟ ପହଞ୍ଚିବା ପୂର୍ବରୁ ଦେହ ତ୍ୟାଗ କଲେ । ଏହିପରି ବୈଷ୍ଣବ ପାଣି, ବାଲକୃଷ୍ଣ ମହାନ୍ତି, ବିଶିଷ୍ଟ ଛଉ ନୃତ୍ୟ ବିଶାରଦ ବନବିହାରୀ ପଟ୍ଟନାୟକ, ବାଙ୍କୀର ମାଧବ ମିଶ୍ର ଓ କବି ପଦ୍ମ ଚରଣ ପଟ୍ଟନାୟକଙ୍କ ପରି ବହୁ ବିଶିଷ୍ଟ ବ୍ୟକ୍ତିଙ୍କୁ ସାହାଯ୍ୟ ଦେବାପାଇଁ ଭାରତ ସରକାରଙ୍କୁ ଲେଖିଲୁ । ସେମାନଙ୍କୁ ଆମ ଅନୁଷ୍ଠାନ ତରଫରୁ ମଧ୍ୟ କିଛି କିଛି ସାହାଯ୍ୟ ଦିଆଗଲା, କିନ୍ତୁ ସରକାରୀ ସାହାଯ୍ୟ ଆସିବାରେ ବିଳମ୍ବ ଘଟିବାରୁ ଏମାନେ ତାହାର ବିଶେଷ ସୁଯୋଗ

ନେଇ ପାରିଲେ ନାହିଁ । ଏହାପରେ ଦୁଃସ୍ଥ କଳାକାରମାନଙ୍କ ସାହାଯ୍ୟାର୍ଥେ କାର୍ଯ୍ୟ କରିବାରେ କେନ୍ଦ୍ର ଅଧିକ ଲୋକପ୍ରିୟ ହୋଇପାରିଲା ଏବଂ ସ୍ୱେଚ୍ଛାରେ କେତେକ ଲୋକ ଅନୁଷ୍ଠାନରେ ଆସି ଯୋଗଦେଲେ । ତନ୍ମଧ୍ୟରେ ଶ୍ରୀ ବ୍ରଜବଲ୍ଲଭ ମିଶ୍ର (ସେତେବେଳର ଆଉ୍ କ୍ଲେକେଟ ପରେ ମନ୍ତ୍ରୀ) ଅନ୍ୟତମ ।

ପରବର୍ତ୍ତୀ ବର୍ଷମାନଙ୍କରେ ଦୁଃସ୍ଥ କଳାକାର ପାଣ୍ଠି କଳା ବିକାଶ କେନ୍ଦ୍ରର ଗୋଟିଏ ସ୍ୱତନ୍ତ୍ର ଅଙ୍ଗ ଭଳି କାର୍ଯ୍ୟକଲା । ପ୍ରତ୍ୟେକ ବାର୍ଷିକାନୁଷ୍ଠାନ ଏବଂ ବାର୍ଷିକ ଉତ୍ସବ ମାନଙ୍କରେ ଦର୍ଶକମାନଙ୍କଠାରୁ ମାଗି ଯାଚି ଟଙ୍କା ଆଦାୟ କରାଗଲା । ମଝିରେ ମଝିରେ ଏହି ପାଣ୍ଠି ନିମିତ୍ତ ସ୍ୱତନ୍ତ୍ର ଅନୁଷ୍ଠାନର ମଧ୍ୟ ଆୟୋଜନ କରାଗଲା । ଏହାପରେ ପାଣ୍ଠିରୁ ରୋଗ ଶଯ୍ୟାରେ ଥିବା ଗୁରୁ କେଳୁଚରଣ ମହାପାତ୍ର, ବଶିଷ୍ଟ-ଗୀତାର ବାଦକ ୬ ମଧୁ ବୋଷଙ୍କ ପରିବାର ବର୍ଗ ହାସ୍ୟ ଅଭିନେତା, ୬ ପୂର୍ଣ୍ଣଚନ୍ଦ୍ର ସିଂହ ଓ ୬ କୃଷ୍ଣ ଚନ୍ଦ୍ର ପାଣ୍ଡେ ଓ କେନ୍ଦ୍ରର ସଙ୍ଗୀତ ଶିକ୍ଷକ ଶ୍ରୀ ରଘୁନାଥ ନନ୍ଦଙ୍କୁ ସାହାଯ୍ୟ କରାଗଲା । ଏଠାରେ ଏ ପ୍ରସଙ୍ଗାନ୍ତରେ ଗୋଟିଏ କଥା ଦୁଃଖର ସହିତ ସ୍ମରଣ କରୁଛୁ ଗୁରୁ କେଳୁଚରଣ ମହାପାତ୍ର ରୋଗ ଶଯ୍ୟାରେ ପଡ଼ିଥିବା ବେଳେ ଆମ ସାହାଯ୍ୟ ଛଡ଼ା, ଆମେ ଲେଖାଲେଖି କରି ତାଙ୍କ ପାଇଁ ଓଡ଼ିଶୀ ସଙ୍ଗୀତ ନାଟକ ଏକାଡେ଼ମୀରୁ ମାସିକ କିଛି ସାହାଯ୍ୟ ମଞ୍ଜୁର କରାଇ ଥିଲୁ । କେଳୁବାବୁ ପ୍ରାୟ ଦୁଇ ତିନ ମାସ ଏ ସାହାଯ୍ୟ ପାଇଲେ । ଏହି ଭିତରେ ତାଙ୍କ ସ୍ୱାସ୍ଥ୍ୟ ଟିକିଏ ଭଲ ହେବାରୁ ସେ ମଝିରେ ମଝିରେ ମନ ପରିବର୍ତ୍ତନ ପାଇଁ କେନ୍ଦ୍ରରେ ଆସି ବସନ୍ତି । ସୁତରାଂ ଏକାଡେ଼ମୀର ପଦାଧିକାରୀମାନେ କହିଲେ, "କେଳୁବାବୁ ତ ଭଲ ହୋଇ କେନ୍ଦ୍ରକୁ ଆସୁଛନ୍ତି । ଆଉ ସାହାଯ୍ୟ ଦେବା କାହିଁକି ?" ତେଣୁ ଅଳ୍ପ ଦିନ ପରେ ତାଙ୍କୁ ସାହାଯ୍ୟ ଦେବା ବନ୍ଦ ହୋଇଗଲା ।

ଏହି ଏକାଡେ଼ମୀ ତରଫରୁ ଯେତେବେଳେ ମହାବିଦ୍ୟାଳୟ ସ୍ଥାପନା କରାଗଲା ସେତେବେଳେ କେଳୁବାବୁଙ୍କୁ ମହାବିଦ୍ୟାଳୟରେ ନିଯୁକ୍ତି ପାଇଁ ଘନଘନ ଡାକରା ଆସିଲା । ଏହାପରେ ଦିଲ୍ଲୀ ସଙ୍ଗୀତ ନାଟକ ଏକାଡେ଼ମୀର ସମ୍ପାଦକ ଡକ୍ଟର ଅବସ୍ଥି କେଳୁବାବୁଙ୍କୁ ଦିଲ୍ଲୀ ଯାଇ ନୃତ୍ୟ ଶିକ୍ଷା ଦେବାପାଇଁ ମଧ୍ୟ ଅନୁରୋଧ କଲେ । କିନ୍ତୁ ସେ କୌଣସି ପ୍ରଲୋଭନ, ଏପରିକି ଟଙ୍କାର ପ୍ରଲୋଭନରେ ମଧ୍ୟ ବିଚଳିତ ହେଲେ ନାହିଁ । ତାଙ୍କର ପ୍ରିୟ ଅନୁଷ୍ଠାନ ଏହି କେନ୍ଦ୍ରରେ ଅଳ୍ପ ଦରମା ହେଲେ ମଧ୍ୟ ରହିଲେ । ଏହି କେଳୁବାବୁଙ୍କ ବିଷୟରେ ମୁଁ ପରେ ଅନେକ କଥା ଉଲ୍ଲେଖ କରିବି । ଏହାପରେ ଚିର ରୋଗ ଶଯ୍ୟାରେ ପଡ଼ିଥିବା କେନ୍ଦ୍ରର ପୁରାତନ ଶିକ୍ଷକ ଓ ଆକାଶବାଣୀ କଳାକାର ଶ୍ରୀ ରଘୁନାଥ ନନ୍ଦଙ୍କୁ ଗତ ଆଠ ବର୍ଷ ହେଲା କେନ୍ଦ୍ରରୁ ତାଙ୍କର ଦରମା ଅବ୍ୟାହତ ରଖାଯାଇଛି । ଅବଶ୍ୟ ଏକାଡେ଼ମୀ ଓ ସାଂସ୍କୃତିକ ବିଭାଗ ତରଫରୁ

ପ୍ରତି ବର୍ଷ ତାଙ୍କୁ କିଛି କିଛି ସାହାଯ୍ୟ ମଧ୍ୟ ମିଳୁଛି । ଏହିପରି ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ଚେଷ୍ଟାରେ ରେଡ଼ିଓ କଳାକାର ସଙ୍ଘ ତରଫରୁ ଶ୍ରୀ ନନ୍ଦଙ୍କୁ କିଛି ସାହାଯ୍ୟ ମିଳିଥିଲା ।

## କେନ୍ଦ୍ର ଓ ରାଜ୍ୟରେ ଏକାଡ଼େମୀ ସ୍ଥାପନା —

ସେତେବେଳେ ଭାରତ ସରକାରଙ୍କ ତରଫରୁ ସଙ୍ଗୀତ ନାଟକ ଏକାଡ଼େମୀ ସ୍ଥାପିତ ହେଲା ଏବଂ ଆମ ରାଜ୍ୟରେ ମଧ୍ୟ ନୃତ୍ୟ ସଙ୍ଗୀତ ନାଟ୍ୟକଳା ପରିଷଦ ନାମରେ ଏକ ସଂସ୍ଥା ଗଢ଼ା ହେଲା ଓ ଏହାର ସମ୍ପାଦକ ହିସାବରେ କାର୍ଯ୍ୟକଲେ ସେତେବେଳର ଆଇ. ଜି. ଶ୍ରୀ ବ୍ରଜ ବିହାରୀ ମିଶ୍ର । ଓଡ଼ିଶାର ସର୍ବମୋଟ ଦଶଗୋଟି ଅନୁଷ୍ଠାନ ଏହି ଏକାଡ଼େମୀରେ ସଂଶ୍ଳିଷ୍ଟ ହେଲେ । ତନ୍ମଧ୍ୟରେ କଳାବିକାଶ କେନ୍ଦ୍ର ଅନ୍ୟତମ । ପ୍ରାରମ୍ଭିକ ଅବସ୍ଥାରେ ଏହି ଏକାଡ଼େମୀ କାହାରିକୁ ଆର୍ଥିକ ସାହାଯ୍ୟ ଦେଉନଥିଲେ । କିନ୍ତୁ ପ୍ରଥମ ଥର ପାଇଁ ରାଜ୍ୟ ଶିକ୍ଷା ନିର୍ଦ୍ଦେଶକଙ୍କ ଜରିଆରେ କେନ୍ଦ୍ରକୁ ୨,୫୦୦ ଟଙ୍କା ସାହାଯ୍ୟ ମିଳିଲା । ପରେ ପରେ ଏକାଡ଼େମୀ ଜରିଆରେ ମଧ୍ୟ ଆମକୁ ସାହାଯ୍ୟ ମିଳିଲା । କଟକର ଆଉ ଗୋଟିଏ ଶିକ୍ଷାନୁଷ୍ଠାନ କେନ୍ଦ୍ରଠାରୁ ଯଥେଷ୍ଟ ବେଶୀ ସାହାଯ୍ୟ ପାଉଥିଲା । କିନ୍ତୁ କେନ୍ଦ୍ରର ବିପୁଳ ଲୋକପ୍ରିୟତା ହେତୁ ଏହା ସମସ୍ତଙ୍କଠାରୁ ବେଶୀ ସାହାଯ୍ୟ ପାଇଲା ଓ ଆଜିଯାଏ ପାଇ ଆସୁଛି ।

ସେତେବେଳର ଶିକ୍ଷା ମନ୍ତ୍ରୀ କଟକର ଗୋଟିଏ ଅନୁଷ୍ଠାନର ସଭାପତି ଥିଲେ ଏବଂ ସେହି ଅନୁଷ୍ଠାନକୁ ନାନାବିଧ ସାହାଯ୍ୟ କରିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ସେ ସମୟର ଶିକ୍ଷା ନିର୍ଦ୍ଦେଶକ କେନ୍ଦ୍ରର ପୃଷ୍ଠପୋଷକ ଥିବାରୁ କେନ୍ଦ୍ରକୁ ଅଧିକ ସାହାଯ୍ୟ କରିବାକୁ ଚେଷ୍ଟା କରୁଥିଲେ । ଏହିପରି ଟଣାଓଟରାରେ ମନ୍ତ୍ରୀ ମହୋଦୟ ସେ ଅନୁଷ୍ଠାନକୁ ମହାବିଦ୍ୟାଳୟ ହିସାବରେ ସରକାରୀ ସ୍ୱୀକୃତି ଦିଆଯିବା ପାଇଁ ଲେଖାଲେଖିକଲେ । ଶିକ୍ଷା ନିର୍ଦ୍ଦେଶକ କମ୍ ବୁଦ୍ଧିମାନ ନଥିଲେ । ଏପରି ଲେଖା-ଲେଖିଲେ ସେ College ପରିବର୍ତ୍ତେ ବହୁବଚନ 'Colleges' ବୋଲି ଲେଖିଦେଲେ । ଯାହାଡ଼େ ଆମ୍ଭେମାନେ ମଧ୍ୟ ପଛେ ପଛେ ଲାଗି ରହିଲୁ । ସୁତରାଂ ଦୁଇଟି କଲେଜ ସ୍ୱୀକୃତି ପାଇଲା ।

ଏହାପରେ ସେତେବେଳର ଶିକ୍ଷା ସଚିବ ଶ୍ରୀ ଭେଙ୍କଟରମଣୀଙ୍କ ଜରିଆରେ ଉଭୟ ଅନୁଷ୍ଠାନକୁ ଗୋଟିଏ କରିବା ପାଇଁ ଏକ ଚେଷ୍ଟା ଆରମ୍ଭ ହେଲା । ଆମେ ସବୁଥିରେ ରାଜି ଥିବା ସତ୍ତ୍ୱେ ଅନ୍ୟ ଅନୁଷ୍ଠାନ ରାଜି ନହେବାରୁ ଶେଷରେ ଏକାଡ଼େମୀ ଜରିଆରେ ଭୁବନେଶ୍ୱରରେ ଗୋଟିଏ ସ୍ୱତନ୍ତ୍ର ମହାବିଦ୍ୟାଳୟ ସ୍ଥାପନା କରାଯିବାର ସିଦ୍ଧାନ୍ତ ନିଆଗଲା ଏବଂ ତାହା ଆଜି "ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ" ନାମରେ ପରିଚିତ ।

କଟକରେ ଆଉ ଗୋଟିଏ ବହୁ ପୁରାତନ ସଙ୍ଗୀତ ଅନୁଷ୍ଠାନର କର୍ମକର୍ତ୍ତା-
ମାନେ ତାହାଙ୍କୁ କେନ୍ଦ୍ର ସହିତ ମିଶାଇବା ପାଇଁ ଇଚ୍ଛା ପ୍ରକାଶ କଲେ । ଆମେ
ମଧ୍ୟ ଭାବିଥିଲୁ ଯେ ସେ ଅନୁଷ୍ଠାନର ପ୍ରତିଷ୍ଠାତାଙ୍କ ନାମ ଆଗରେ ରଖି କଳା ବିକାଶ
କେନ୍ଦ୍ର ନାମ ମଧ୍ୟ ବଜାୟ ରଖିବୁ । ଅନୁଭୂତିରୁ ଜଣାଯାଏ ଯେ ଏସବୁ
ଅନୁଷ୍ଠାନମାନଙ୍କରେ ଭଲମନ୍ଦ ମିଶାମିଶି ଲୋକେ ଥାଆନ୍ତି । କେତେକ ଲୋକ
ସଦାବେଳେ ସହଯୋଗ ସପକ୍ଷରେ ଓ ଅପର ପକ୍ଷରେ ଅନ୍ୟମାନେ ଈର୍ଷା ଓ
ଅହମିକାରେ କୌଣସି କାର୍ଯ୍ୟ କରାଇଦେବାରେ ବିରୋଧ କରିଥାଆନ୍ତି । ଏହା
କେବଳ ଅନ୍ୟ ଅନୁଷ୍ଠାନ ପକ୍ଷରେ ନୁହେଁ, ଆମ ଅନୁଷ୍ଠାନରେ ମଧ୍ୟ ସେହିପରି
ଚକ୍ରାଧାରିର ଲୋକେ ସଦାବେଳେ ରହିଆସିଛନ୍ତି । ଫଳରେ ସହଯୋଗର
ବାତାବରଣ ସୃଷ୍ଟି ହୋଇ ପାରିଲା ନାହିଁ ।

ମୁଁ ବ୍ୟକ୍ତିଗତ ଭାବରେ ଏପରି ସହଯୋଗର ବାତାବରଣ ସୃଷ୍ଟି କରିବାକୁ
ଚେଷ୍ଟାକରି ବିଫଳ ହୋଇଛି । ଗୋଟିଏ ଦୃଷ୍ଟାନ୍ତରୁ ଏହା ବୁଝାପଡିବ । ଓଡ଼ିଶା
ସଙ୍ଗୀତ ନାଟକ ଏକାଡେମୀ ଆନୁକୂଲ୍ୟରେ ବଡ଼େ ଗୋଲାମ ଅଲ୍ଲୀ ଖାଁଙ୍କର କେତେକ
ସଙ୍ଗୀତ ଆସର କଟକ, ଭୁବନେଶ୍ୱର, ପୁରୀ ଆଦି ସ୍ଥାନମାନଙ୍କରେ ଆୟୋଜନ
କରାଯିବା ସ୍ଥିର ହେଲା । ଏକାଡେମୀ ଏ ଦିଗରେ ଆମର ସହଯୋଗ ଚାହିଁଲେ
ଏବଂ ଆମେ ଦୁଇ ଅନୁଷ୍ଠାନ ମିଶି ଖାଁ ସାହେବଙ୍କ କାର୍ଯ୍ୟକ୍ରମ ଆୟୋଜନର ଭାର
ନେଲୁ । ସେତେବେଳେ ବଡ଼େ ଗୋଲାମ ଅଲ୍ଲୀ ଖାଁଙ୍କର ଗୋଟିଏ ସଙ୍ଗୀତ କାର୍ଯ୍ୟ-
କ୍ରମର ପାରିଶ୍ରମିକ ଥିଲା ୨,୦୦୦ ଟଙ୍କା । ଏପରି ତିନୋଟି କାର୍ଯ୍ୟକ୍ରମର ଆୟୋଜନ
କରାଗଲା । ତାଙ୍କ ଦଳର ଯିବା ଆସିବା ଖର୍ଚ୍ଚ ବ୍ୟତୀତ ଅଗ୍ରୀମ ବାଦ୍ ଦେଇ ଯାହା
ଟଙ୍କା ଦରକାର ପଡ଼ିଲା ତାହା ମୁଁ ହାତରୁ ଦେଇଦେଲି । ଏକାଡେମୀର ଟଙ୍କା
ମଞ୍ଜୁର ହୋଇ ଆସିବାର ବିଳମ୍ବ ହେବାରୁ ମୁଁ ଏହା କଲି । ବାସ୍, ସେଠିକରେ
କାର୍ଯ୍ୟ ସରିଲା । ଦୁଇ ଅନୁଷ୍ଠାନ ମିଶି ସଠିକ୍ ହିସାବ ଦେଲେ ଯିନା ଏକାଡେମୀରୁ
ଟଙ୍କା ପାଇବୁ । ଏ ସବୁ ହିସାବରେ ଫଇସଲା କରିବା ପାଇଁ ବର୍ଷେ ଦେଢ଼ବର୍ଷ
ଲାଗିଗଲା ଏବଂ ବହୁ ଦିନପରେ ଓ ବହୁ କଷ୍ଟରେ ଏ ଟଙ୍କା ପାଇଲି । ତେଣୁ କାନ
ମୋଡ଼ା ଖାଇଲି ଯେ ଭବିଷ୍ୟତରେ ଏପରି ମିଳାମିଶି କାମ କରିବାର ଆବଶ୍ୟକତା
କିମ୍ବା ଯଥାର୍ଥତା ନାହିଁ ।

ଏହି ଅବସରରେ ବଡ଼େ ଗୋଲାମ ଅଲ୍ଲୀ ଖାଁଙ୍କର ଗୋଟିଏ ବଡ଼ ମଜା
କଥା ଶୁଣାଉଛି । କଲିକତାର ଗୋଟିଏ ବଡ଼ ସଙ୍ଗୀତ ସମାରୋହର ଆବାହକ
ଶ୍ରୀ କାଳିଦାସ ସାନ୍ୟାଲଙ୍କ ଜରିଆରେ ମୁଁ ଖାଁ ସାହେବଙ୍କୁ କଟକ ଆଣିଲି । ତାଙ୍କ
ଦଳର ଆସିବା ଟିକେଟ ସାନ୍ୟାଲ ମହାଶୟ କରିଦେଇଥିଲେ । ମୁଁ ଏହା ଜାଣି
ନଥିଲି । ତେଣୁ କଲିକତାରୁ କଟକ ଓ କଟକରୁ ହାବଡ଼ା ପର୍ଯ୍ୟନ୍ତ ଟିକଟର ସବୁ

ଝଙ୍କା ଦେଲି ଏବଂ ତାଙ୍କ ଦଳ ଚୁପ୍‌ଚାପ ନେଇଗଲେ । ପରେ ତାଙ୍କ ଦଳ ପୁରୀ ଗଲେ । ସେଠାରେ କାର୍ଯ୍ୟକ୍ରମ ସାରି କଲିକତା ଫେରିବା ବେଳକୁ ପୁରୀବାଲା ମଧ୍ୟ ତାଙ୍କୁ ତାଙ୍କର ପୁରୀ କଲିକତା ଟିକେଟର ମୂଲ୍ୟ ଦେଲେ । ଏହିପରି କଲିକତା, କଟକ ଏବଂ ପୁରୀ ଏହି ତିନିଜାଗାରୁ ସେମାନେ ଟିକେଟର ମୂଲ୍ୟ ପାଇଲେ । ପରେ ଏକଥା ହିସାବ ବେଳକୁ ଜଣାଗଲା । ସାଙ୍ଗେ ସାଙ୍ଗେ ମୁଁ ଆମର ସହ ସମ୍ପାଦକ ନୀଳମାଧବ ବାବୁଙ୍କୁ କଲିକତା ପଠାଇଲି । ଖାଁ ସାହେବ ଗୋଟିଏ ବଡ଼ ହୋଟେଲରେ ରହୁଥିଲେ । ସେଠାରେ ପହଞ୍ଚିବା ବେଳକୁ ସେ ଶୋଇଥାନ୍ତି ଏବଂ ତାଙ୍କର ଅନୁଚରମାନେ ସେବାଶୁଶ୍ରୂଷା କରୁଥାଆନ୍ତି । ଯେତେବେଳେ ଭୁଲରେ ତାଙ୍କ ଦଳକୁ ଝଙ୍କା ଦିଆଯାଇଥିବା କୁହାଗଲା, ଖାଁ ସାହେବ କହିଲେ, "ଦେଖିଏ ଭାଇଜୀ, ଯୋ ଆତାହେ ଓ ହଜମ ହୋ ଜାତାହେ । ଔର ପିଛେକା ବାତ୍ ହମେ ୟାଦ ଭି ନହିଁ ରହତୀ ।" ନୀଳମାଧବବାବୁ ଚୁପ୍ କରି କଟକକୁ ଖାଲି ଫେରିଲେ ।

## ଭୁବନେଶ୍ୱର କଳାବିକାଶ କେନ୍ଦ୍ର—

ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ପୌରୋହିତ୍ୟରେ ଭୁବନେଶ୍ୱରରେ "ଭୁବନେଶ୍ୱର କଳା ବିକାଶ କେନ୍ଦ୍ର" ନାମରେ ଗୋଟିଏ ଅନୁଷ୍ଠାନ ଆରମ୍ଭ ହେଲା ଏବଂ ଏହାର ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ଶ୍ରୀ ଅନ୍ନଦା ଚରଣ ଦାସ, ଡକ୍‌ଟର ହରିବନ୍ଧୁ ମହାନ୍ତି, ଶ୍ରୀ ଗୋବିନ୍ଦ ଚନ୍ଦ୍ର ରଥ ପ୍ରଭୃତି ଥିଲେ । ସେତେବେଳେ ଏହି ଅନୁଷ୍ଠାନକୁ ଆମର ଶାଖା ଅନୁଷ୍ଠାନ ରୂପେ ଗ୍ରହଣ କରିବା ପାଇଁ କେତେକ ଇଚ୍ଛା ପ୍ରକାଶ କରିଥିଲେ ମଧ୍ୟ ଆମେ ଏହାକୁ ସ୍ୱତନ୍ତ୍ର ଅନୁଷ୍ଠାନ ରୂପେ କାର୍ଯ୍ୟ କରିବାକୁ ପରାମର୍ଶ ଦେଲୁ । ଏହି ଅନୁଷ୍ଠାନର ଉନ୍ନତି ନିମିତ୍ତ କଟକରୁ ଭୁବନେଶ୍ୱର ଯାଇ ସେମାନଙ୍କର ବହୁ ସାଂସ୍କୃତିକ ଅନୁଷ୍ଠାନମାନଙ୍କରେ ଆମ୍ଭେମାନେ ଯୋଗ ଦେଉଥିଲୁ ଏବଂ କେନ୍ଦ୍ରର ଗୋଟିଏ ସଂଲଗ୍ନ ଅନୁଷ୍ଠାନ ହିସାବରେ ଆମେ ସେ ଅନୁଷ୍ଠାନର ବାର୍ଷିକ ପରୀକ୍ଷା ଇତ୍ୟାଦି ପରିଚାଳନା କରୁଥିଲୁ । ଆମର କେତେକ ଶିକ୍ଷକ ମଧ୍ୟ ସେଠାକୁ ଯାଇ ସାମୟିକ ଭାବରେ କାର୍ଯ୍ୟ କରୁଥିଲେ । କିନ୍ତୁ ଧୀରେ ଧୀରେ ଉଭୟ ଅନୁଷ୍ଠାନର କେତେକ ବିରୋଧ ମତାବଲମ୍ବୀ ବନ୍ଧୁଙ୍କ ଯୋଗୁ ଏହି ଅନୁଷ୍ଠାନ ଆମ ପ୍ରତି ବିମୁଖ ହେଲା ଏବଂ ଶେଷରେ "ଭୁବନେଶ୍ୱର କଳା କେନ୍ଦ୍ର" ନାମରେ ପରିଚିତ ହେଲା ।

ସେହିପରି ବଲାଙ୍ଗୀରରେ ମଧ୍ୟ ୨୮ ଜାନୁୟାରୀ ୧୯୫୭ରେ ନୃତ୍ୟ ସଙ୍ଗୀତ କଳା ପରିଷଦ ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ାଯାଇ ଆମ କେନ୍ଦ୍ର ସହିତ ସଂଶ୍ଳିଷ୍ଟ ହେଲା । ଏହାର ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା ଓ ଶ୍ରୀ ବସନ୍ତ କୁମାର ପଟ୍ଟନାୟକଙ୍କ ନାମ ଉଲ୍ଲେଖଯୋଗ୍ୟ । କଟକର ଗୋପାଳଜୀଉ

ସଙ୍ଗୀତ ଅନୁଷ୍ଠାନ ଏବଂ କେଉଁଝରର ପ୍ରେମଲତିକା କଳାଭବନ ପରି କେତେକ ଅନୁଷ୍ଠାନ ମଧ୍ୟ ଆମ ସହିତ ସଂଲଗ୍ନ ହୋଇ କାମ କରୁଥିଲେ ।

## ଶିଶୁ ମଞ୍ଜରୀ—

ଆମେ ସମସ୍ତେ ରାଜନୈତିକ କର୍ମୀ ଥିବାରୁ ପ୍ରଥମେ କେନ୍ଦ୍ରକୁ ସେହି ଉଦ୍ଦେଶ୍ୟରେ ପରିଚାଳନା କରିବା ପାଇଁ ଚେଷ୍ଟା କରୁଥିଲୁ । ସୁତରାଂ କେବଳ ନୃତ୍ୟ ଗୀତ ନୁହେଁ, ରାଷ୍ଟ୍ରଭାଷା ଶିକ୍ଷା, ସୂତାକଟା ବିଭାଗ ପରି ବହୁ ବିଭାଗ ମଧ୍ୟ ଥିଲା । କିଛି ଦିନ ପାଇଁ କଟକର ଶିଳ୍ପୀ ଶ୍ରୀ ବିଭୂତିଭୂଷଣ କାନୁନଗୋଙ୍କ ପରିଚାଳନାରେ ଏକ ଚିତ୍ରକଳା ବିଭାଗ ମଧ୍ୟ ଖୋଲା ଯାଇଥିଲା । କିନ୍ତୁ ସେ ସମୟରେ ସବୁଠାରୁ ବେଶୀ ଲୋକପ୍ରିୟ ହୋଇ ପାରିଲା ଶିଶୁ ବିଭାଗ 'ଶିଶୁ ମଞ୍ଜରୀ' । ଏହି ବିଭାଗ ଜରିଆରେ ଶିଶୁମାନଙ୍କର ମାନସିକ, ତାତ୍ତ୍ୱିକ ଓ କାୟିକ ଉନ୍ନତି ଦିଗରେ ନାନା-ବିଧ ପ୍ରଚେଷ୍ଟା ହେଉଥିଲା । କ୍ରୀଡ଼ା ପ୍ରତିଯୋଗିତା, ଭ୍ରମଣ, ସାଂସ୍କୃତିକ କାର୍ଯ୍ୟକ୍ରମ ପରି ବହୁ ଆୟୋଜନ ଜରିଆରେ ଏହି ବିଭାଗ ସବୁ ସମୟରେ ସକ୍ରିୟ ରହିଲା । ସୁତରାଂ ଧୀରେ ଧୀରେ ପ୍ରାୟ ପାଞ୍ଚଶହ ଶିଶୁ ଏହାର ସଭ୍ୟ ହେଲେ । ନୃତ୍ୟ ବିଭାଗରେ ଜୟନ୍ତୀ, ମିନାକ୍ଷୀ ନନ୍ଦ, ବନପ୍ରିୟା, କୃଷ୍ଣପ୍ରିୟା, ମାଧୁରୀ ଇତ୍ୟାଦି ବହୁ ପିଲାଏ ମଧ୍ୟ ଯୋଗଦେଲେ ।

ଏହି ଶିଶୁମାନଙ୍କୁ ନେଇ ପ୍ରଥମ କରି ଆମ୍ଭେମାନେ କଲିକତାର ଆନ୍ତର୍ଜାତିକ ଶିଶୁ ଅନୁଷ୍ଠାନ (C. L. T.)ରେ ଯୋଗଦେଲୁ । ଏହିପରି ପ୍ରତିବର୍ଷ ଏହି ଅନୁଷ୍ଠାନରେ ଯୋଗ ଦେବାଦ୍ୱାରା କଲିକତା ପରି ବଡ଼ ସହରରେ ଓଡ଼ିଶୀ ନୃତ୍ୟ ଲୋକ ଚକ୍ଷୁକୁ ଆସିଲା । ନାନା ଅସୁବିଧା ବଶତଃ ମଝିରେ କେତେବର୍ଷ ଆମେ C. L. T.ରେ ଯୋଗଦେଇ ପାରିଲୁ ନାହିଁ । କିନ୍ତୁ ଏବେ ତାହାର ରୌପ୍ୟ ଜୁବୁଲି ମହୋତ୍ସବରେ କଳା ବିକାଶ କେନ୍ଦ୍ରକୁ ଆଗ୍ରହର ସହିତ ଡକାଯାଇଥିଲା ଏବଂ C. L. T.ର ପ୍ରତିଷ୍ଠାତା ଶ୍ରୀ ସମର ଚାଟାର୍ଜି ତାଙ୍କର ଭାଷଣରେ ଗଦ୍‌ଗଦ୍ ହୋଇ କେନ୍ଦ୍ରର ସମ୍ପର୍କ ବିଷୟରେ ଉଲ୍ଲେଖ କଲେ ଏବଂ ଆମର କଳାକାରମାନଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ ।

ଭାରତ ବର୍ଷର ପ୍ରଧାନ ଶିଶୁ ଅନୁଷ୍ଠାନ ବମ୍ବେର 'ବାଲକାନ୍-କା-ବାରି'ର ପାଟନା ଅଧିବେଶନରେ ଆମ୍ଭେମାନେ ଯୋଗ ଦେଇଥିଲୁ । କଟକର 'ମାଲୁଡ଼ ପାର୍କ' (ବର୍ତ୍ତମାନର ଗୋପବନ୍ଧୁ ପାର୍କ)ରେ ଅନୁଷ୍ଠିତ ଶିଶୁମାନଙ୍କର ବାର୍ଷିକ ଦିବସରେ ମଧ୍ୟ ଆମ୍ଭେମାନେ ଯୋଗଦେଲୁ ।

ସେହି ସମୟରେ ଦିଲ୍ଲୀରେ ନୂଆ ହୋଇ Social Welfare Board (ସମାଜ ମଙ୍ଗଳ ବୋର୍ଡ଼) ଗଢ଼ା ହୋଇଥାଏ । ଏହାର ଅଧ୍ୟକ୍ଷା

ଶ୍ରୀମତୀ ଦୁର୍ଗା ବାଈ ଦେଶମୁଖଙ୍କ ଆଗମନ ଉପଲକ୍ଷେ ଆୟୋଜିତ ଏକ ବିଚିତ୍ରାନୁଷ୍ଠାନରେ କେନ୍ଦ୍ର ଯୋଗଦେଇଥିଲା । ପରେ ପରେ ବୋର୍ଡ଼ ତରଫରୁ ଅନୁଷ୍ଠାନକୁ ଶିଶୁମାନଙ୍କର ଉନ୍ନତି ପାଇଁ ୧,୦୦୦ ଟଙ୍କା ସାହାଯ୍ୟ ମିଳିଲା । ସେହି ଦିନରୁ ଆଜି ପର୍ଯ୍ୟନ୍ତ ରାଜ୍ୟ ବୋର୍ଡ଼ଙ୍କ ଜରିଆରେ ଶିଶୁମାନଙ୍କର ଉନ୍ନତି ଲାଗି ବରାବର ସାହାଯ୍ୟ ମିଳୁଛି । ଏହି ବୋର୍ଡ଼ ଜରିଆରେ ଗୋଟିଏ ଶ୍ରେଷ୍ଠ ଶିଶୁ ରଙ୍ଗମଞ୍ଚ ମଧ୍ୟ କେନ୍ଦ୍ରରେ ନିର୍ମାଣ କରାଯାଇଛି ।

ମୋର ବନ୍ଧୁ ଶ୍ରୀ ରାମ ପ୍ରସାଦ ମହାନ୍ତି, ଦୈନିକ ଆଶାର ସମ୍ପାଦକ ଶ୍ରୀ ମହେନ୍ଦ୍ର ପଟ୍ଟନାୟକ ଓ ବିବନ୍ଧାଇ ଜେଲରୁ ଖଲାସ ହେବାପରେ କଟକରେ ଆସି ଆମ ଘରେ ରହୁଥିଲେ । ଆମେ ସମସ୍ତେ ମିଶି ଶିଶୁମାନଙ୍କ ପାଇଁ ନାନା ଯୋଜନା କରୁ । ଏପରି ଅବସ୍ଥାରେ ଜାତୀୟ କବି ବୀର କିଶୋର ଦାସଙ୍କ ପ୍ରେରଣାରେ 'ମୋ ଦେଶ' ନାମକ ଗୋଟିଏ ଶିଶୁ ପତ୍ରିକା ପ୍ରକାଶ ପାଇଲା ଏବଂ ଆମ୍ଭେମାନେ ସେଥିରେ ସହଯୋଗ କଲୁ ।

ପରେ ପରେ ରାମବାବୁ 'ପ୍ରଜାତନ୍ତ୍ର'ରେ ଯୋଗଦେଲେ ଏବଂ ଶିଶୁ ବିଭାଗ ମୀନାବଜାରର ମୁଖ୍ୟ 'ଜହ୍ନର ଭାଇ' ହିସାବରେ ପରିଚିତ ହେଲେ । ରାମବାବୁଙ୍କ ଚେଷ୍ଟାରେ ଏହି ମୀନାବଜାର ସାରା ରାଜ୍ୟରେ ବ୍ୟାପିଗଲା ଏବଂ ଗାଁ ଗହଳରେ ମୀନାବଜାରର ଶାଖାମାନ ଗଢ଼ିଉଠିଲା । ଆମ୍ଭେମାନେ ମଧ୍ୟ କଳା ବିକାଶ ମୀନାମଣ୍ଡଳୀ ନାମରେ ଏ ଅନୁଷ୍ଠାନରେ ଯୋଗଦେଲୁ । ତଚା ମହତାବ ଥିଲେ ଏହାର ପୃଷ୍ଠପୋଷକ । ପ୍ରତିବର୍ଷ ମୀନାବଜାର ଜରିଆରେ ଶିଶୁମେଳାର ଆୟୋଜନ ହୁଏ । କଟକ, ପୁରୀ, ଖୁର୍ଦ୍ଦାଆଗ୍ର ଏବଂ ଅନ୍ୟାନ୍ୟ ସ୍ଥାନର ଏହି ମେଳାରେ ଓ ବଲାଙ୍ଗୀର ପରି ସ୍ଥାନର ଆଞ୍ଚଳିକ ମେଳାରେ କେନ୍ଦ୍ରର ଶିଶୁମାନେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ଏବଂ ଆମ ମଣ୍ଡଳୀର ପିଲାମାନେ ପ୍ରାୟ ସବୁ ପ୍ରତିଯୋଗିତାରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲେ । ଏପରିକି ଆମ ମୀନାମଣ୍ଡଳୀ ସର୍ବୋଚ୍ଚ ବିଜେତା ଦଳ ହିସାବରେ ଗୋଟିଏ ଶିଲ୍ଡ ପାଉଥାଏ । ଶିଶୁମାନଙ୍କ ଉଦ୍ଦିଷ୍ଟ ମୋର ଲେଖା ହିନ୍ଦି ଗୀତ ମୀନାବଜାରର ଜାତୀୟ ସଙ୍ଗୀତ ହିସାବରେ ସ୍ୱୀକୃତି ପାଇଲା । ସେତେବେଳେ ଯିଦ୍ୟାନ୍ତ ପ୍ରତିଯୋଗିତା ଆମ ରାଜ୍ୟରେ ସେତେ ପ୍ରଚଳିତ ନଥିଲା । ଆମ ମୀନାମଣ୍ଡଳୀ ଦ୍ୱାରା ଏହା ପ୍ରବର୍ତ୍ତିତ ହୋଇ ଗାଁ ଗହଳରେ ବ୍ୟାପିଗଲା ।

ସେତେବେଳେ ମୀନାକ୍ଷୀ ନନ୍ଦ, ବନପ୍ରିୟା ନନ୍ଦ, ମାଧୁରୀ ମହାନ୍ତି, ଶୁଭଶ୍ରୀ ମହାନ୍ତି, ଆଭା ଦାସ, ସୁକୃତି, ନୀଳମଣି, ଶୁଭଲକ୍ଷ୍ମୀ, ରାଜଲକ୍ଷ୍ମୀ, ପୁଷ୍ପଲତା ପ୍ରଭୃତି ବହୁ ଛାତ୍ରୀ ବିଶେଷ ଲୋକପ୍ରିୟ ହୋଇ ଉଠିଥିଲେ । ସେମାନଙ୍କର ଓଡ଼ିଶୀ ବନ୍ଦନା ନୃତ୍ୟ କେବଳ ଆମ ରାଜ୍ୟରେ ନୁହେଁ, ବାହାରର ବହୁ ସ୍ଥାନମାନଙ୍କରେ ପ୍ରଶଂସା ଲାଭକଲା ।

ବିଶେଷତଃ ମିନାକ୍ଷୀ ନନ୍ଦଙ୍କର ନଟରାଜ ନୃତ୍ୟ ଭଙ୍ଗୀ ଦେଖି ସମସ୍ତେ ବିସ୍ମିତ ହୋଇ ପଡ଼ିଥିଲେ । ଦିଲ୍ଲୀର ରାଷ୍ଟ୍ରପତି ଭବନରେ, ଆହ୍ଲାବାଦ, ପାଟନା, ଜାମସେଦପୁର, କଲିକତା ଇତ୍ୟାଦି ବହୁ ସ୍ଥାନମାନଙ୍କରେ ଏହି ନୃତ୍ୟ ପ୍ରଶଂସା ଲାଭକଲା । ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ, ନୃତ୍ୟ ଗୁରୁ ଉଦୟ ଶଙ୍କର ଓ ଭାରତନାଟ୍ୟମର ବିଶିଷ୍ଟ ନୃତ୍ୟ ଶିଳ୍ପୀ ଶ୍ରୀମତୀ ରୁକ୍ମିଣୀ ଦେବୀ ଅରୁଣ୍ଡେଲଙ୍କ ପରି ଗଣ୍ୟମାନ୍ୟ ବ୍ୟକ୍ତି ମିନାକ୍ଷୀଙ୍କର ନୃତ୍ୟ ଦେଖି ତାଙ୍କୁ ଆଶୀର୍ବାଦ କଲେ । ଏହି ଶିଶୁ ବିଭାଗ ଶାଖାରେ କେତେକ ଦିନ ଆମେ ସକ୍ରିୟ ଭାବରେ କାର୍ଯ୍ୟ କଲାପରେ ସେ ବିଭାଗର ଶିଶୁମାନଙ୍କୁ ଏହାର ପରିଚାଳନା ଭାର ହସ୍ତାନ୍ତର କଲୁ । ତନ୍ମଧ୍ୟରେ ଶ୍ରୀ କାର୍ତ୍ତିକ ଚନ୍ଦ୍ର ରଥ, ଶ୍ରୀ ପ୍ରଶାନ୍ତ ନନ୍ଦ, ଶ୍ରୀ ତାପସ ବୋଷ, ଶ୍ରୀ ଦେବେନ୍ଦ୍ର କୁମାର ଦାସ, ଶ୍ରୀ ରାଧାମୋହନ ସାହୁଙ୍କ ପରି ବହୁ ଉଦୀୟମାନ ଯୁବକ ଅନ୍ତର୍ଭୁକ୍ତ । ସେମାନଙ୍କ ଜରିଆରେ ସରସ୍ୱତୀ ପୂଜା ଗଣେଶ ପୂଜା ଇତ୍ୟାଦିର ଆୟୋଜନ କରାଯାଏ ।

## ପାଠାଗାର—

ସେହି ସମୟରେ କଟକରେ ଶିଶୁମାନଙ୍କ ପାଇଁ କୌଣସି ପାଠାଗାର ନଥିବାରୁ କେନ୍ଦ୍ର ତରଫରୁ ଗୋଟିଏ ଶିଶୁ ପାଠାଗାର ଖୋଲାଗଲା । ଏହି ପାଠାଗାରକୁ ଦେଶ ବିଦେଶର ବହୁ ଦୂତାବାସ ତରଫରୁ ବହି ଓ ସାମୟିକ ପତ୍ର ପତ୍ରିକା ବିନା ମୂଲ୍ୟରେ ମିଳିଲା । କଟକରୁ 'ସମାଜ', 'ପ୍ରଜାତନ୍ତ୍ର', ମାତୃଭୂମି' ପରି ସବୁ ଦୈନିକ ଖବର କାଗଜ, ସାପ୍ତାହିକ ଓ ମାସିକ ପତ୍ରିକା ମଧ୍ୟ ବିନା ମୂଲ୍ୟରେ ଅଣାଗଲା । ପ୍ରତି ବର୍ଷ ଧାଡ଼ି ଧାଡ଼ି ହୋଇ କଟକର ପୁସ୍ତକ ବିକ୍ରେତାଙ୍କ ପାଖକୁ ପହଞ୍ଚିଯାଉ ଏବଂ ସେମାନେ ମଧ୍ୟ ଆଦରରେ କେନ୍ଦ୍ରକୁ ବହି ଇତ୍ୟାଦି ଦାନ କରନ୍ତି ।

ଏହି ଶିଶୁ ଲାଇବ୍ରେରୀ କେତେବର୍ଷ ପରେ ବମ୍ବେର ଆମ ପୃଷ୍ଠପୋଷକ ଶ୍ରୀ ଅନନ୍ତରାୟ ସୁପାରିଓ୍ୱାଲଙ୍କ ନାମରେ ନାମିତ ହେଲା । ଧୀରେ ଧୀରେ ଏହି ପାଠାଗାରକୁ ଶିଶୁ ବ୍ୟତୀତ ଯୁବକମାନଙ୍କ ପାଇଁ ମଧ୍ୟ ବହି ଅଣାଗଲା । ସଙ୍ଗୀତ ନୃତ୍ୟ ନାଟକ ଉପରେ ବହୁ ମୂଲ୍ୟବାନ ପୁସ୍ତକ ମଧ୍ୟ ଗବେଷକ ଓ ଛାତ୍ର ଛାତ୍ରୀଙ୍କ ଅଧ୍ୟୟନାର୍ଥେ ଅଣାଗଲା । କିଛି ଦିନ ପୂର୍ବେ କବିଚନ୍ଦ୍ର ମଧ୍ୟ ପାଠାଗାରକୁ କେତେକ ବହି ଦାନ ସ୍ୱରୂପ ଦେଇଛନ୍ତି । ବହୁ ଭାଷାର ପ୍ରାୟ ଛଅ ହଜାର ପୁସ୍ତକ ଏ ପାଠାଗାରରେ ସଞ୍ଚିତ ହେଲାଣି ଏବଂ ଦୁଇଟି ବଡ଼ ପ୍ରକୋଷ୍ଠ ମଧ୍ୟରେ ଏହି ପାଠାଗାରକୁ ସ୍ଥାନ ଦିଆଯାଇଛି ।

ଏହି ପାଠାଗାରର ସୁପରଚାଳନାରେ ପ୍ରଥମେ ଶ୍ରୀ ଅମରେନ୍ଦ୍ର ପ୍ରସାଦ ଗିରି ରହିଥିଲେ ଯେ ଶିଶୁ ମଞ୍ଚଙ୍କର ଅନ୍ୟକାର୍ଯ୍ୟ ମଧ୍ୟ ଦେଖୁଥିଲେ । ଏବେ କେତେବର୍ଷ ହେଲା ଶ୍ରୀ ମାୟାଧର ସାହୁ ଏହି ଦାୟିତ୍ୱରେ ଅଛନ୍ତି । ତାଙ୍କର ସହଯୋଗୀ ହିସାବରେ ଶ୍ରୀ ପ୍ରଶାନ୍ତ ଚୌହାନ କାର୍ଯ୍ୟ କରୁଛନ୍ତି ।

## ଲୋକ ପ୍ରିୟତାର କେତୋଟି ଜ୍ୱଳନ୍ତ ଦୃଷ୍ଟାନ୍ତ—

ଏହିପରି ଶିଶୁମାନଙ୍କର ସଙ୍ଗୀତ ନୃତ୍ୟ ଆଦି କାର୍ଯ୍ୟକ୍ରମ ମାଧ୍ୟମରେ ଆମ ଶିଶୁ ଅନୁଷ୍ଠାନ ଘରେ ଘରେ ଲୋକପ୍ରିୟ ହେଲା । ଫଳରେ ସାରା ଓଡ଼ିଶାରେ ବିଭିନ୍ନ ସ୍ଥାନମାନଙ୍କରେ ସଙ୍ଗୀତାନୁଷ୍ଠାନମାନ ଗଢ଼ି ଉଠିଲା । ଏପରିକି ସମସ୍ତେ ଭାବିଲେ ଯେ ସଙ୍ଗୀତ ଅନୁଷ୍ଠାନ ଅର୍ଥ 'କଳା ବିକାଶ କେନ୍ଦ୍ର' । ସୁତରାଂ ପ୍ରାୟ ପନ୍ଦର କୋଡ଼ିଏଟି କଳା ବିକାଶ କେନ୍ଦ୍ର ନାମକ ଅନୁଷ୍ଠାନ ସାରା ରାଜ୍ୟରେ ଆରମ୍ଭ ହେଲା । ଆମର ଦୈନିକ 'ସମାଜ'ର ନାମ ସାଧାରଣଙ୍କ ମନରେ ଏତେ ପ୍ରବେଶ କରି ଯାଇଛି ଯେ ଆଜିଯାଏ ଗାଁ ଗହଳରେ ଲୋକେ ଇଂରାଜୀ ଖବର କାଗଜକୁ ଇଂରାଜୀ ସମାଜ ଓ ବଙ୍ଗଳା ଖବର କାଗଜକୁ ବଙ୍ଗଳା ସମାଜ ବୋଲି କହୁଛନ୍ତି । ସେହିପରି ସଙ୍ଗୀତ ଅନୁଷ୍ଠାନ ଗଢ଼ିବା ଅର୍ଥ ତାହାର ନାମ କଳା ବିକାଶ କେନ୍ଦ୍ର ରଖିବା ଉଚିତ ବୋଲି ସାଧାରଣ ଲୋକଙ୍କ ମନରେ ଧାରଣା ହେଲା ଏବଂ ବହୁ ଲୋକେ ଆମେ ଏଠାରେ "କଳା ବିକାଶ କେନ୍ଦ୍ର" କରିଛୁ ବୋଲି ଲେଖିଲେ । ବାଧ୍ୟ ହୋଇ ଆମ୍ଭମାନଙ୍କୁ ଖବର କାଗଜ ଜରିଆରେ ଜଣାଇବାକୁ ପଡ଼ିଲା ଯେ କୌଣସି ସ୍ଥାନରେ 'କଳା ବିକାଶ କେନ୍ଦ୍ର' ନାମ ଦିଆଯାଇ ପାରିବ ନାହିଁ । ଏପରିକି ଆମ ସହିତ ସଂଶ୍ଳିଷ୍ଟ ଭୁବନେଶ୍ୱର କଳା ବିକାଶ କେନ୍ଦ୍ରକୁ 'କଳା କେନ୍ଦ୍ର' ନାମ ରଖିବା ପାଇଁ ପରାମର୍ଶ ଦିଆଗଲା । କିନ୍ତୁ ଗଞ୍ଜାମର ଲୋକନୃତ୍ୟ ଦଳ "ନରେନ୍ଦ୍ରପୁର କଳା ବିକାଶ କେନ୍ଦ୍ର" ନାମରେ ଆଜି ପର୍ଯ୍ୟନ୍ତ ରହିଆସିଛି ।

କଳା ବିକାଶ କେନ୍ଦ୍ରର ଲୋକପ୍ରିୟତାର ଆଉ ଦୁଇଟି ଦୃଷ୍ଟାନ୍ତ ହେଉଛି ଯେ ସହରରେ କୌଣସି ସ୍ଥାନରେ ଗଲାବେଳେ ଯଦି ଘୁଙ୍ଗୁରର ଶବ୍ଦ ଶୁଭିଲା ତେବେ ହଠାତ୍ ଲୋକେ କହି ପକାଉଥିଲେ, "କିହୋ, ଏଠାରେ କ'ଣ କଳା ବିକାଶ କେନ୍ଦ୍ର ହେଉଛି କି" ? ସେହିପରି କୌଣସି ପିଲା ପରୀକ୍ଷାରେ ଫେଲ ହେଲେ ତାଙ୍କର ଅଭିଭାବକ ବେଳେ ବେଳେ କହୁଥିଲେ, "କଳା ବିକାଶ କେନ୍ଦ୍ର କରୁନା, ଫେଲ ହେବ ନାହିଁ ?" ସେତେବେଳେ ଭଦ୍ରଲୋକମାନଙ୍କ ଘରେ ନୃତ୍ୟ ଗୀତର ସେତେ ଆଦର ନଥିବାରୁ ବାପା ମା'ମାନେ ଏହିପରି ଭାବୁଥିଲେ ।

୧୯୫୬ ମସିହାରେ ଯେତେବେଳେ ଶ୍ରୀ କାଳନ୍ଦୀ ଚରଣ ପାଣିଗ୍ରାହୀ ବମ୍ବେ-ଠାରେ ପି. ଇ. ଏନ୍. ସମ୍ମିଳନୀରେ ଯୋଗ ଦେଇଥିଲେ ସେତେବେଳେ ସେ

ସମ୍ମିଳନୀରେ ଯୋଗ ଦେଇଥିବା କେତେକ ବିଶିଷ୍ଟ ବ୍ୟକ୍ତିଙ୍କଠାରୁ କଟକରେ ଗଢ଼ିଉଠୁଥିବା କଳା ବିକାଶ କେନ୍ଦ୍ର କଥା ଶୁଣି ବିସ୍ମିତ ହୋଇ ପଡ଼ିଥିଲେ । ପରେ କଳା ବିକାଶ କେନ୍ଦ୍ର ବିଶେଷତଃ ମୋ ପ୍ରତି ତାଙ୍କର ଏତେ ଭଲ ଧାରଣା ଜନ୍ମିଲା ଯେ ମୋର 'ଅମଡ଼ାବାଟ' ଚଳଚ୍ଚିତ୍ରର ସଫଳତା ପରେ ଯେତେବେଳେ କଳାକାର-ମାନଙ୍କୁ ସମ୍ବର୍ଦ୍ଧନା ଦିଆଗଲା ସେତେବେଳେ ସେ କହି ପକାଇଲେ, "କେବଳ କଳା ବିକାଶ କେନ୍ଦ୍ର ନୁହେଁ, ବାବୁଲାଲ ବାବୁ ଯେ କୌଣସି କାମ ହାତକୁ ନେବେ ସେଠାରେ ସୁନା ଫଳିବ" । ତାଙ୍କପରି ଗୁରୁଜନମାନଙ୍କର ଏହିପରି ଶୁଭାଶୀଷ ମୋତେ ଅନେକ ପ୍ରେରଣା ଦେଇଛି ଏବଂ ସେମାନଙ୍କର ସଦିଚ୍ଛାରେ ହିଁ ଆଜି କେନ୍ଦ୍ର ଓଡ଼ିଶାରେ ଗୋଟିଏ ଶ୍ରେଷ୍ଠ ସାଂସ୍କୃତିକ ଅନୁଷ୍ଠାନ ଭାବରେ ଠିଆହୋଇ ପାରିଛି ।

## ନୃତ୍ୟ ନାଟିକାର ନୂଆ ଯୁଗ—

ପରେ ପରେ ପ୍ରତିମା, ସୁରମା, ଜୟନ୍ତୀ, ସାଧନା, କାଦମ୍ବିନୀ ପରି ବହୁ ଛାତ୍ର ଛାତ୍ରୀ ବିଭିନ୍ନ ନୃତ୍ୟରେ ନାମ ଅର୍ଜନ କଲେ । ଏହା ମଧ୍ୟରେ କଳା ବିକାଶ କେନ୍ଦ୍ର ପକ୍ଷରୁ ନୃତ୍ୟ ନାଟିକାର ପ୍ରବର୍ତ୍ତନ କରାଗଲା । ଆକାଶବାଣୀର ଶ୍ରୀ ସୁରେନ ମହାନ୍ତି ପ୍ରଥମ କରି ଏକଲବ୍ୟ, ଧରମା ଓ ବାଜିରାଉତର ବିଷୟବସ୍ତୁ ନେଇ ଗୋଟିଏ ସୁନ୍ଦର ନୃତ୍ୟ ନାଟିକା 'ଅମୃତ ସନ୍ତାନ' ଲେଖିଲେ । ଗଣକବି ବୈଷ୍ଣବ ପାଣି ଓ ବାଳକୃଷ୍ଣ ମହାନ୍ତିଙ୍କ ଗୀତିନାଟ୍ୟଠାରୁ ଏହା ସମ୍ପୂର୍ଣ୍ଣ ଭିନ୍ନ ରକମର ଲେଖା । ତେଣୁ ସୁରେନ ମହାନ୍ତିଙ୍କଦ୍ୱାରା ନୃତ୍ୟ ନାଟିକାର ନବୀନ ଯୁଗ ଆରମ୍ଭ ହେଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଶ୍ରୀ ନନ୍ଦକିଶୋର ମହାନ୍ତିଙ୍କର 'ସାକ୍ଷୀ ଗୋପାଳ', ଶ୍ରୀ ଧୀରେନ୍ଦ୍ର ନାଥ ପଟ୍ଟନାୟକଙ୍କ 'ମେଘଦୂତ', ଡକ୍ଟର ମାୟାଧର ମାନସିଂହଙ୍କର 'କୃଷ୍ଣଦ୍ୟୁତି', ଓ ସର୍ବୋପରି ନୀଳମାଧବ ବାବୁଙ୍କର 'ତପସ୍ୱିନୀ' ପରି ଅନେକ ବିଶିଷ୍ଟ ଲେଖକଙ୍କ କଲମରୁ ଶତାଧିକ ନୃତ୍ୟ ନାଟିକା କେନ୍ଦ୍ରଦ୍ୱାରା ପରିବେଷିତ ହେଲା । ସୁର ଭାଇଙ୍କର 'ଅନାଦି ସଙ୍ଗୀତ', 'କୃଷ୍ଣ ଗାଥା' ପରି ନୃତ୍ୟ ନାଟିକା ଆଜି ମଧ୍ୟ ନିତ୍ୟ ନୂତନ । କଥାରେ ଅଛି 'ସୁନ୍ଦର ମୂର୍ତ୍ତିର ଅବସାଦ ନାହିଁ, ଯେତେ ଦେଖିଲେ ହେଁ ନୂଆ ଦିଶୁ ଥାଇ ।"

ପଢ଼ିଲେ ହୁଏତ ଲୋକେ ହସିବେ, କିନ୍ତୁ କେନ୍ଦ୍ର ପ୍ରାରମ୍ଭର ବର୍ଷକ ପରେ ଆଜିର ଶ୍ରେଷ୍ଠ ନୃତ୍ୟ ଗୁରୁ ପଦ୍ମଶ୍ରୀ କେଳୁ ଚରଣ ମହାପାତ୍ର ମାତ୍ର ୬୦ ଟଙ୍କା ମାସିକ ଦରମାରେ କେନ୍ଦ୍ରରେ ଯୋଗ ଦେଇଥିଲେ । ମିନାକ୍ଷୀ, କୃଷ୍ଣପ୍ରିୟା, ବନପ୍ରିୟା ପରି କେଳୁବାବୁଙ୍କର ଉପରେ ଛାତ୍ରୀ ଯୋଗ ଦେବାରୁ ଅନୁଷ୍ଠାନର ଗୌରବ ବହୁ ପରିମାଣରେ ବୃଦ୍ଧି ପାଇଲା ।

ମଝିରେ କେତେଦିନ ସଂଯୁକ୍ତା ପାଣିଗ୍ରାହୀ ଛତ୍ରପୁରରେ ରହୁଥିଲେ । ସେହିପରି ସାଧନା ବୋଷ ଓ ବିଜୟା ପଣ୍ଡା ବ୍ରହ୍ମପୁରରେ ରହୁଥିଲେ । ପ୍ରତିବର୍ଷ ପରୀକ୍ଷାର ଦୁଇ ତିନିମାସ ପୂର୍ବରୁ ସଂଯୁକ୍ତା, ସାଧନା, ବିଜୟା ଓ ବାଲେଶ୍ୱରର ଜ୍ଞାନରଞ୍ଜନ ପଟ୍ଟନାୟକଙ୍କ ଝିଅ ଅନସୂୟା ମୋ ଘରେ ଆସି ରହନ୍ତି ଏବଂ ଓଡ଼ିଶୀ ନୃତ୍ୟର ପରୀକ୍ଷା ଦେଇ ଫେରିଯାଆନ୍ତି । ଆମ ଗୁରୁଦ୍ୱାତିମାନଙ୍କ ଘରେ ଅନେକ କିସମର ଖଟାମିଠା ଅଗୃର ତିଆରି ହୁଏ । ଆମ ଘରେ ମଧ୍ୟ ସେହିପରି ଆଗୃର ସଂଗୃହିତ ହୋଇ ରହିଥାଏ । ସେହି ପିଲାମାନେ ଏବେ ମଧ୍ୟ ଦେଖାହେଲେ କହନ୍ତି "ବାବୁଭାଇ, ବେନଙ୍କ (ମୋ ସ୍ତ୍ରୀ)ଙ୍କ ଅଜାଣତରେ ଆପଣଙ୍କ ଘରୁ କେତେ ଯେ ଆଗୃର ଚୋରି କରି ଖାଇଛୁ ତାହାର ସୀମା ନାହିଁ ।"

ପିଲାମାନଙ୍କୁ ଆଖପାଖ ଅଞ୍ଚଳରୁ ଆଣିବା ପାଇଁ ଗୋଟିଏ ତେଲେଙ୍ଗାଣୀ ମାଉସୀକୁ ରଖାଯାଇଥିଲା । ପିଲାମାନେ ତାଙ୍କୁ ଖୁବ ହଇରାଣ କରନ୍ତି । କିନ୍ତୁ ଅଶୀ, ପଞ୍ଚାଅଶୀ ବର୍ଷର ସେ ବୁଢ଼ୀ ଆଜି ପର୍ଯ୍ୟନ୍ତ ଜୀବିତ ଅଛି ଓ ଆଜିଯାଏ ସେ ପିଲା-ମାନଙ୍କ କଥା ହସି ହସି କହୁଛି । ଦୂର ସ୍ଥାନମାନଙ୍କରୁ ଝିଅମାନଙ୍କୁ ଆଣିବା ପାଇଁ ଗୋଟିଏ ଦୁଇଟି ରିକ୍ସାର ବନ୍ଦୋବସ୍ତ କରାଗଲା । ରାଣୀହାଟ, ଷ୍ଟେସନ ବଜାର ପରି ବହୁ ଦୂରରୁ ପିଲାମାନଙ୍କୁ ଆଣିବା ପାଇଁ ଅସୁବିଧା ହେବାରୁ ରାଣୀହାଟରେ ଗୋଟିଏ ଶାଖା ଖୋଲିବା ପାଇଁ ସ୍ଥିର ହେଲା । ଏହାର ପୃଷ୍ଠପୋଷକ ହେଲେ ଡକ୍ଟର ଗିରିଜା ଶଙ୍କର ଦାସ ମହାପାତ୍ର ଏବଂ ତାଙ୍କର ସ୍ତ୍ରୀ ଶ୍ରୀମତୀ ବାଣୀ ଦାସ ମହାପାତ୍ର ଏବଂ ଅଫିସ ସମ୍ପାଦକ ହିସାବରେ କାମ କଲେ ଶ୍ରୀ ରଞ୍ଜନ୍ ମିଶ୍ର । ଆଜିର ଶ୍ରେଷ୍ଠ ନୃତ୍ୟ ଶିଳ୍ପୀ ଶ୍ରୀମତୀ କୁଙ୍କୁମ ମହାନ୍ତି ପ୍ରଥମେ ରାଣୀହାଟ ଶାଖାର ଛାତ୍ରୀ ଥିଲେ । ସ୍ଥାନର ଅଭାବ ଓ ପରିଚାଳନାର ତ୍ରୁଟି ଯୋଗୁଁ ଦୁଇବର୍ଷ ପରେ ଏହି ଶାଖାକୁ ମୁଖ୍ୟ କାର୍ଯ୍ୟାଳୟ ସହିତ ମିଶାଇ ଦିଆଗଲା ।

## ଗୃହ ନିର୍ମାଣ—

କେନ୍ଦ୍ରର ମୁଖ୍ୟ କାର୍ଯ୍ୟାଳୟ ଗୋର ବାବୁଙ୍କ ଘରୁ ଗଙ୍ଗାମନ୍ଦିରସ୍ଥ କନିକା ରାଜାଙ୍କର ଗୃହେଟି ଦୋକାନ ଘରେ ଅବସ୍ଥାପିତ ହେଲା । ପରେ ପରେ ସେହି ଘରେ ପି. ଟି. ଆଇ.ର କର୍ମଗୃରୀ ବୃନ୍ଦ ରହିଲେ । ସେଠାରେ ମଧ୍ୟ ଜାଗାର ଅଭାବ ହେବାରୁ ବାଙ୍କା ବଜାରର ସ୍ୱ . ପ୍ରମୋଦ କିଶୋର ଦାସଙ୍କର ପ୍ରଶସ୍ତ ଦୁଇମହଲା କୋଠା ମାସିକ ୨୫୦ ଟଙ୍କା ଭଡ଼ାରେ କେନ୍ଦ୍ର ପାଇଁ ନିଆଗଲା । ଏହା ଯୋଗୁ ରାଣୀହାଟର ଏବଂ ମୁଖ୍ୟ କାର୍ଯ୍ୟାଳୟର ବହୁ ଛାତ୍ରଛାତ୍ରୀଙ୍କର ସମାବେଶ ହୋଇ-ପାରିଲା । ୧୯୬୨ରୁ ୧୯୬୭ ଏପରି ପାଞ୍ଚ ବର୍ଷରେ କେନ୍ଦ୍ରର ଅନେକ ଦିଗରେ ଉନ୍ନତି ହେଲା । ସୁତରାଂ କେନ୍ଦ୍ରର ନିଜସ୍ୱ ଗୃହ ଲାଗି ଚେଷ୍ଟା କରାଗଲା । ସେତେବେଳର

ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ଜରିଆରେ ଆମେ କେନ୍ଦ୍ର ଗୃହ ପାଇଁ ଗୋଟିଏ ଜାଗା ସରକାରଙ୍କଠାରୁ ଲିଜ୍ ଆଣିବା ପାଇଁ ଚେଷ୍ଟା କରି ଆସୁଥିଲୁ । ବମ୍ବେ ରାଜ୍ୟର ରାଜ୍ୟପାଳ ପଦରୁ ଅବ୍ୟାହତି ନେଇ ଯେତେବେଳେ ପୁଣି ୧୯୫୭ ମସିହାରେ ସେ କଟକ ଫେରି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ ସେ କଥା ଆମେ ଉପସ୍ଥାପିତ କଲୁ । ସେତେବେଳର କଟକର ଜିଲ୍ଲାପାଳ ସର୍ଦ୍ଦାର ଅମର ସିଂହ ଏ ଦିଗରେ ଆମକୁ ବହୁତ ସାହାଯ୍ୟ କଲେ । ମହତାବ ବାବୁ ମଧ୍ୟ ତାଙ୍କୁ ତାଙ୍କ କେନ୍ଦ୍ର ପାଇଁ ଶୀଘ୍ର ଜାଗା ଦେବାକୁ ପରାମର୍ଶ ଦେଲେ । ତେଣୁ ସର୍ଦ୍ଦାର ଅମର ସିଂହ ଆମ୍ଭମାନଙ୍କୁ ସଙ୍ଗରେ ଧରି କଟକ ସହରର ବିଭିନ୍ନ ସ୍ଥାନ ବୁଲି ଦେଖାଇଲେ ।

ଇଉନାଇଟେଡ୍ କ୍ଲବର ପଛ ପଟରେ କେତେକ ଖାଲି ଜାଗା ଥିଲା । ତାହା ଖାଲ, ଢିପ, ଜଙ୍ଗଲ ଓ ମଇଳା ଜଳରେ ଜର୍ଜରିତ । ଏହା ଆଗରୁ ଇଉନାଇଟେଡ୍ କ୍ଲବକୁ ଏ ଜାଗା ତାଙ୍କର ଜାଗା ସହିତ ମିଶାଇ ନେବାପାଇଁ ପରାମର୍ଶ ଦିଆଯାଇ-ଥିଲା, କିନ୍ତୁ ଏପରି ଆବର୍ଜନା ପୂର୍ଣ୍ଣ ଜାଗା ନେବାପାଇଁ ସେମାନେ ମନା କରିଦେଲେ । ସେମାନଙ୍କର ଧାରଣା ମଧ୍ୟ ନଥିଲା ଯେ ଏ ଜାଗାକୁ ସଫା ସୁତୁରା କଲେ ଏହାର ପରିସର ହେବ ୧୪ ଗୁଣ୍ଠ । ବହୁତ ଆଲୋଚନା ପରେ ଏ ଜାଗା ନେବା ପାଇଁ ଆମ୍ଭେ ସ୍ଥିର କଲୁ ଏବଂ କେବଳ ୪୦୦ ଟଙ୍କା ସଲାମି ଦେଇ ଏହି ୧୪ ଗୁଣ୍ଠ ଜାଗା ପାଇଲୁ ।

ଡକ୍ଟର ହରେକୃଷ୍ଣ ମହତାବଙ୍କୁ ବ୍ୟକ୍ତିଗତ ଅଭିନନ୍ଦନ ଜଣାଇବା ସହକାରେ ଓ ଭବିଷ୍ୟତରେ ଏହି ଜାଗା ଉପରେ ଗୃହ ନିର୍ମାଣ କିପରି ଭାବରେ କରାଯିବ ସେ ବିଷୟ ଆଲୋଚନା କରିବା ପାଇଁ ସେତେବେଳର ଆମର ଜଣେ ଅଭିଭାବକ ଶ୍ରୀ ଜଗ୍‌ଗୀ ସାହେବଙ୍କର ଗାଡ଼ି ମାଗି ଆଣି ମୁଁ ଓ ଆର୍ତ୍ତିବାବୁ ଭୁବନେଶ୍ୱର ଯାତ୍ରା ଆରମ୍ଭ କଲୁ । ମେରିଆ ବଜାରର ଆର୍ତ୍ତିବାବୁଙ୍କ ଘର ପଛପଟେ ବଡ଼ ନାଳ କଡ଼ ରାସ୍ତାରେ ସେମିନାରୀ ସ୍କୁଲର ପଛପଟ ପାଚେରୀରେ ଡ୍ରାଇଭରର ଅସାବଧାନତା ଯୋଗୁ ଗାଡ଼ିଟି ହଠାତ୍ ବାଡ଼େଇ ହୋଇଯାଇ ଗୋଟିଏ ବଡ଼ ଧରଣର ଦୁର୍ଘଟଣା ଘଟିଲା । ଗାଡ଼ିର ପଛ ସିଟ୍‌ଟା ଏକବାର ଓଲଟି ସାମନାକୁ ଚାଲି ଆସିଲା । ଆର୍ତ୍ତି-ବାବୁଙ୍କର ଚଷମା ଭାଙ୍ଗି ଦେହରେ ବହୁତ ଆଘାତ ଲାଗିଲା । ଷ୍ଟିଅରିଂ ହୁଇଲ୍‌ଟା ଡ୍ରାଇଭରର ମୁହଁରେ ବାଡ଼େଇ ହୋଇଯାଇ ତାହାର ଦାନ୍ତ ଭାଙ୍ଗିଗଲା ଓ ଓଠ କଟିଯାଇ ରକ୍ତାକ୍ତ ଅବସ୍ଥା ଘଟିଲା । ମୁଁ ମଧ୍ୟ କ୍ଷତବିକ୍ଷତ ହୋଇଥିଲି, କିନ୍ତୁ ସେତେବେଳେ ବିଶେଷ ଜାଣି ପାରିଲି ନାହିଁ । ଘଣ୍ଟା ଦୁଇ ଘଣ୍ଟା ପରେ ଆଣ୍ଠୁ ଭୀଷଣ ଦରଜ ହୋଇ ଫୁଲିଗଲା ଏବଂ ଆମ୍ଭମାନଙ୍କୁ କେତେକ ଦିନ ବିଛଣାରେ ପଡ଼ିରହିବାକୁ ହେଲା । ଅବଶ୍ୟ ଗାଡ଼ିର **Insurance** ଥିବାରୁ ସର୍ଦ୍ଦାର ଜଗ୍‌ଗୀ ସାହେବ ତାହାର କ୍ଷତିପୂରଣ ପାଇଲେ ।

ଆମର ଅନୁରୋଧ କ୍ରମେ ପଟ୍ଟନାୟକ କମ୍ପାନୀର ଶ୍ରୀ ଗୋପାଳ ପଟ୍ଟନାୟକ ଆମେ ପାଇଥିବା ଜାଗାକୁ ସମତଳ ଓ ପରିଷ୍କାର କରିବା ପାଇଁ ତତ୍ପର ହେଲେ ଏବଂ ତତ୍‌କାଳୀନ ଲଫ୍‌ଟଇରିଗେସନ ବିଭାଗର ଡାଇରେକ୍ଟର ଶ୍ରୀ ହେମନ୍ତ କୁମାର ମହାନ୍ତିଙ୍କ ସାହାଯ୍ୟରେ ଗୋଟିଏ ବୁଲ୍‌ଡୋଜର ଅଣାଯାଇ ଅଳ୍ପ ଦିନରେ ଏହି ଜାଗାକୁ ସମତଳ କରାଯାଇ ସଫା ସୁତୁରା କରାଯିବାରୁ ଏହା ଲୋକ ଚକ୍ଷୁକୁ ଆସିଲା । ସେତେବେଳେ ଇଉନାଇଟେଡ୍ କ୍ଲବ ଓ ଆମର ସୀମା ମଧ୍ୟରେ ବହୁ ପୁରାତନ ମାହାଳ ଗଛ ଠିଆ ହୋଇଥିଲା । ଖାସ ମାହାଲକୁ ଅନୁରୋଧ କରିବାରୁ ସେ ସବୁ ନିଲାମ କରାଯାଇ ରାତାରାତି କଟାଗଲା ।

ସେତେବେଳେ ଇଉନାଇଟେଡ୍ କ୍ଲବ ବାଲାଙ୍କର ଆଖି ଫିଟିଲା ଏବଂ ଏତେ ବଡ଼ ଜାଗା ହାତରୁ ଚାଲିଯିବାରୁ ସେମାନେ ଅନୁତାପ କଲେ । ଏହି ଇଉନାଇଟେଡ୍ କ୍ଲବର ପରେ କେହି ମା ବାପ ରହିଲେ ନାହିଁ । କ୍ଲବର ବହୁ ଜାଗା ଖାଲି ପଡ଼ିଥିଲା । ଆମେ ତେଣୁ ବିଚାର କଲୁ କି ଆମ ଜାଗା ଓ ଇଉନାଇଟେଡ୍ କ୍ଲବ ଜାଗା ମିଶାଇ, ସେଠାରେ ରାଜସ୍ଥାନରେ ଥିବା ଭଳି ଏକ ବନସ୍ଥଳୀ ବିଦ୍ୟାପୀଠ କରାଗଲେ ଭଲ ହୁଅନ୍ତା । କେନ୍ଦ୍ରର କର୍ତ୍ତୃପକ୍ଷ ଏ ଦିଗରେ ଇଉନାଇଟେଡ୍ କ୍ଲବର କର୍ମକର୍ତ୍ତା ଶ୍ରୀ ଗୋପାଳ ପଟ୍ଟନାୟକ ପ୍ରଭୃତିଙ୍କ ସହିତ ଆଲୋଚନା କରିବାର ସ୍ଥିରକଲେ । କିନ୍ତୁ ଘରେ ପରେ ଆମର ଗୃହ କଳହ ଯୋଗୁ ଏହା କ୍ରିୟାନ୍ୱିତ ହୋଇ ପାରିଲା ନାହିଁ । ଫଳରେ କେତେ ଦିନ ସେ ଜାଗା 'ସଂସ୍କୃତ ବିହାର' ନାମକ ଏକ ଅନୁଷ୍ଠାନ ହାତରେ ରହିଲା । ସେତେବେଳର ସାଂସ୍କୃତିକ ବ୍ୟାପାର ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ଅମଳରେ ଏହାର କେତେକାଂଶ ଭଞ୍ଜ ମଣ୍ଡପ ନିର୍ମାଣାର୍ଥେ ଦିଆଗଲା ଏବଂ ବାକି ଜାଗା ଏବେ ମ୍ୟୁନିସିପାଲିଟି କର୍ତ୍ତୃପକ୍ଷ ନିଜ ହାତକୁ ନେଇଛନ୍ତି ।

ଜାଗା ତ ମିଳିଲା, କିନ୍ତୁ ଘର ତୋଳିବୁ କିପରି ? ଟଙ୍କା କାହିଁ ? ଦୁଇ, ଅଢ଼େଇ ଲକ୍ଷ ଟଙ୍କାର ଆନୁମାନିକ ଖର୍ଚ୍ଚରେ କେନ୍ଦ୍ର ପାଇଁ ଗୋଟିଏ ସୁନ୍ଦର ଘର ତିଆରି ହୋଇପାରିବ ବୋଲି ସମସ୍ତେ କହିଲେ । ଅନୁଷ୍ଠାନର ଦୈନନ୍ଦିନ ଖର୍ଚ୍ଚ ପାଇଁ ତ ସବୁବେଳେ ଅର୍ଥ ଅଭାବ । ସୁତରାଂ ଏପରି ଗୃହ ନିର୍ମାଣର ଯୋଜନା ପାଇଁ କେନ୍ଦ୍ରର ବନ୍ଧୁମାନେ ବିଶେଷ ଉତ୍ସାହୀ ନଥିଲେ । ମୁଁ ଭାବିଲି ଯେ ଯଦି ଏହା ପାଇଁ ବିଶେଷ ଧ୍ୟାନ ଦିଆନଯାଏ କିମ୍ବା ସାଧନା କରାନଯାଏ ଏବଂ ସମସ୍ତଙ୍କୁ ପ୍ରେରଣା ଦେବା ଭଳି କିଛି ଉପାୟ କରାନଯାଏ ତାହାହେଲେ କିଛି ହୋଇ ପାରିବ ନାହିଁ । ସୁତରାଂ ୧୯୫୭ ମସିହା ମାର୍ଚ୍ଚ ମାସ ୯ ତାରିଖ ଦିନ କେନ୍ଦ୍ରର ବିଶେଷ ଉତ୍ସବରେ ମୋର ବନ୍ଧୁ ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି ଓ ଅନ୍ୟମାନଙ୍କ ସମ୍ମୁଖରେ ଶପଥ ଗ୍ରହଣ କଲି ଯେ ଯେ ପର୍ଯ୍ୟନ୍ତ କେନ୍ଦ୍ରର ଗୃହ ନିର୍ମାଣ ହୋଇ ନ ପାରୁଛି ସେ ପର୍ଯ୍ୟନ୍ତ ମୁଁ ଆଦୌ ଜୋତା ମାଡ଼ିବି ନାହିଁ, ସନ୍ଧ୍ୟା ୬ଟାରୁ ଉର୍ଦ୍ଧ୍ୱ ଆରଦିନ ସକାଳ ୬ଟା ପର୍ଯ୍ୟନ୍ତ

ଅନ୍ନଜଳ ଗ୍ରହଣ କରିବିନାହିଁ, ଗଦିରେ ଶୋଇବି ନାହିଁ । ଏହିପରି ସାତୋଟି ଶପଥ ଗ୍ରହଣ କଲି । ପ୍ରତି ଦିନ ଅନ୍ତତଃ କେନ୍ଦ୍ରପାଇଁ ୧୦୦ ଟଙ୍କା ଆଦାୟ କରିବାର ସଙ୍କଳ୍ପ କଲି । ପ୍ରଥମେ କବିଚନ୍ଦ୍ର କାଳୀ ଚରଣ ପଟ୍ଟନାୟକ, ଶ୍ରୀ ବୈକୁଣ୍ଠନାଥ ମହାନ୍ତି, ଶ୍ରୀ ଖଗେନ୍ଦ୍ରନାଥ ମିଶ୍ର, ଶ୍ରୀ ଉପେନ୍ଦ୍ର ମିଶ୍ର, ଶ୍ରୀମତୀ ରମଳା କର ଓ ମୁଁ ପ୍ରଭୃତି ଏକାଠି ହୋଇ ଜଷ୍ଟିସ୍ ହରିହର ମହାପାତ୍ରଙ୍କ ଘରେ ପହଞ୍ଚିଲୁ । ସର୍ବ ପ୍ରଥମେ ସେ ୧୦୦ ଟଙ୍କା ଦାନକଲେ । ସେହିଦିନ ଶ୍ରୀମତୀ ରମଳା କର ୫୦୦ ଟଙ୍କା ଶ୍ରୀ ଜୟନ୍ତୀଲାଲ୍ ଦୋଶୀ ୫୦୦ ଟଙ୍କା ଦେଲେ । ଏହିପରି ବହୁ ବନ୍ଧୁ ଆମ୍ଭମାନଙ୍କୁ ଉତ୍ସାହିତ କଲେ ।

ତେଣୁ ୧୯୫୮ରେ ଅଗଷ୍ଟ ୧୫ ତାରିଖ ଦିନ ଡକ୍ଟର ମହତାବ ଗୃହ ନିର୍ମାଣର ଶିଳାନ୍ୟାସ ଦେଇ ଲୋକାଲ ଡେଭଲେପମେଣ୍ଟ ଫଣ୍ଡରୁ ୧୦,୦୦୦ ଟଙ୍କାର ସାହାଯ୍ୟ ଘୋଷଣା କଲେ । ଜଷ୍ଟିସ୍ ହରିହର ମହାପାତ୍ରଙ୍କ ଜରିଆରେ ଉତ୍କଳ କମ୍ପାନୀ ପ୍ରାୟ ୪,୦୦୦ ଟଙ୍କା ମୂଲ୍ୟର ଇଟା ଯୋଗାଇ ଦେଲେ । ଆମର ଏ ଉତ୍ସାହ ଦେଖି ଶ୍ରୀ ବିଜୟ କୃଷ୍ଣ ଦାସଙ୍କ ପରି କେତେକ ଅଭିଭାବକମାନେ ସ୍ୱତଃ ପ୍ରବୃତ୍ତ ହୋଇ ୧୦୦ ଟଙ୍କା କରି ଦାନକଲେ ।

ଏହି ଗୃହ ନିର୍ମାଣ ପାଇଁ ତିନି ବର୍ଷ ସମୟ ନିର୍ଦ୍ଧାରିତ କରାଯାଇଥିଲା, କିନ୍ତୁ ଦେଖାଗଲା ଯେ ବର୍ଷେ ଦେଢ଼ ବର୍ଷ ଭିତରେ ଆମେ ବହୁତ ଆଗେଇ ଗଲୁ । ବମ୍ବେର ମୋର କେତେକ ବନ୍ଧୁ ଓ କେନ୍ଦ୍ରର ଅନ୍ୟତମ ପୃଷ୍ଠପୋଷକ ଶ୍ରୀ ଅନନ୍ତରାୟ ସୁପାରିଓ୍ୱାଲ୍ ମୋ ଅନୁରୋଧରେ ବମ୍ବେରେ ଗୋଟିଏ ସାହାଯ୍ୟ ରଜନୀର ଆୟୋଜନ କଲେ । ବମ୍ବେର ଲୋକନାଟ୍ୟ ସଂଘର ଗୋଟିଏ ପ୍ରସିଦ୍ଧ ନାଟକ 'କୁଳବଧୂ' ମଞ୍ଚସ୍ଥ ହେଲା ଏବଂ ଖର୍ଚ୍ଚ ବାଦ୍ ୩୫,୦୦୦ ଟଙ୍କା ଗୋଟିଏ ଥଳି ଆକାରରେ ବନ୍ଧୁମାନେ ମୋତେ ଭେଟି ଦେଲେ । ଏହିପରି କଟକରେ ଆଲାଏଡ଼ ଡିଲର୍ସର ଅଂଶୀଦାର ଶ୍ରୀ କେଶବ ଚନ୍ଦ୍ର ପଣ୍ଡା ଓ ଶ୍ରୀ ମନମୋହନ ଲାଲ କେନ୍ଦ୍ର ଭବନର **Sanitary fitting**ର ସବୁ ଜିନିଷ ମାଗଣା ଯୋଗାଇବା ପାଇଁ ପ୍ରତିଶ୍ରୁତି ଦେଲେ । ପ୍ରାୟ ୧୦,୦୦୦ ଟଙ୍କା ମୂଲ୍ୟର ଏପରି ଜିନିଷ ସେମାନେ ଯୋଗାଇ ଦେଇଥିଲେ । ସର୍ଦ୍ଦାର ଅମର ସିଂହଙ୍କର ହଠାତ୍ ରାଉରକେଲାକୁ ବଦଳି ହୋଇଗଲା । ଆମର ସେଠାରେ ବହୁ ବନ୍ଧୁଙ୍କ ସାହାଯ୍ୟରେ ଗୋଟିଏ ସାହାଯ୍ୟ ରଜନୀର ଆୟୋଜନ କରାଯାଇ କେନ୍ଦ୍ରକୁ ୧୦,୦୦୦ ଟଙ୍କା ଦିଆଗଲା । ଏହିପରି ଜୋଡ଼ାରେ ମଧ୍ୟ ସେଠାର କଣ୍ଟ୍ରାକ୍ଟର ଶ୍ରୀ ବଂଶୀଧର ତ୍ରିପାଠୀ ଓ ଅନ୍ୟ ବନ୍ଧୁମାନେ ବିଚିତ୍ରାନୁଷ୍ଠାନ ଜରିଆରେ ୪,୦୦୦ ଟଙ୍କା ସାହାଯ୍ୟ ଦେଲେ । ଏସବୁ ଦିଗରେ ବହୁଲୋକ ଟଙ୍କା ଛଡ଼ା ଆମକୁ ଅନେକ ଦିଗରେ ମଧ୍ୟ ସାହାଯ୍ୟ କରିଥିଲେ । ସେ ସମୟର ଟାଉନ ପ୍ଲାନିଂ ଅଫିସର ଶ୍ରୀ ଜେଡ୍. ଏ. ଭଜ ଏବଂ ରାସ୍ତା ଓ ଗୃହ ନିର୍ମାଣ ବିଭାଗର ଶ୍ରୀ ଗୋବିନ୍ଦ ଗୁପ୍ତ, ଶ୍ରୀ

ମଦନ ମୋହନ ଭଞ୍ଜ, ଶ୍ରୀ ରମେଶ୍ୱର ରଥ ଓ ଶ୍ରୀ ପ୍ରେମାନନ୍ଦ ଦାସଙ୍କ ପରି ଇଞ୍ଜିନିୟରମାନେ ଏବଂ ଅନ୍ୟାନ୍ୟ ସହରର ବନ୍ଧୁ ବ୍ୟକ୍ତି ଆମର ଅଧ୍ୟବସାୟ ଦେଖି ଆମକୁ ସବୁ ଦିଗରେ ସାହାଯ୍ୟ କଲେ ।

ଶେଷରେ ୧୯୫୧ ମସିହା ଡିସେମ୍ବର ମାସ ଶେଷ ସୁଦ୍ଧା କେନ୍ଦ୍ରର ପ୍ରଥମ ଡାଲ ଗୃହର କାର୍ଯ୍ୟ ସବୁ ଶେଷ କରିବୁ ବୋଲି ମନସ୍ଥ କଲୁ । ଶ୍ରୀଯୁକ୍ତ ଦାଶରଥୀ ବାବୁଙ୍କ ପରି ସହକର୍ମୀଙ୍କ ସାହାଯ୍ୟରେ ଓ କଣ୍ଟ୍ରାକ୍ଟର ନରୋଦବାବୁ ଓ ତାଙ୍କର ମିସ୍ତ୍ରୀ ମୂଲିଆଙ୍କ ଦ୍ୱାରା ଦିନରାତି ଲାଗି କାର୍ଯ୍ୟ ଶେଷ କରାଗଲା ।

ଦିନେ ଏପରି ଘଟିଲା ଯେ ପ୍ରାୟ କୋଡ଼ିଏ ଜଣ ମିସ୍ତ୍ରୀ ଓ ତଦନୁଯାୟୀ ମୂଲିଆଙ୍କ ସାହାଯ୍ୟରେ ଦୁଇ ଦିନରେ କେନ୍ଦ୍ର ସାମନାରେ ପାଚେରି କାର୍ଯ୍ୟ ଶେଷ ହେଲା । ରାଷ୍ଟ୍ରଭାଷା ପ୍ରେସର ଆମର ବିଶିଷ୍ଟ ବନ୍ଧୁ ଶ୍ରୀ ଗୋପୀନାଥ ସାହୁ ଓ ଶ୍ରୀ ତ୍ରିଲୋଚନ ଦ୍ୱିବେଦୀ ଦିନେ ହଠାତ୍ ସେବାଟେ ଯାଉଥିବା ବେଳେ ଆଶ୍ଚର୍ଯ୍ୟ ହେଲେ ଯେ ଦୁଇ ତିନି ଦିନ ପୂର୍ବରୁ ଏଠାରେ କିଛି ନଥିଲା, ଏ ପାଚେରି କିପରି ତିଆରି ହୋଇଗଲା ? ସେମାନେ ହସିଲେ, "ବାବୁ ଭାଇ, ଏତେ ଶୀଘ୍ର ମ୍ୟାଜିକ୍ ପରି ଏ କ'ଣ ହେଲା ! ଏ ପାଚେରି ରହିବକି ? ନା, ସାମାନ୍ୟ ଷଣ୍ଢ ଧକ୍କାରେ ଏହା ଓଲଟି ପଡ଼ିବ ?" ସୁଖର କଥା, ଆଜି ପର୍ଯ୍ୟନ୍ତ ସେହି ପାଚେରି କେନ୍ଦ୍ର ସମ୍ମୁଖରେ କେବଳ ଛିଡ଼ା ହୋଇ ରହିଛି ତାହା ନୁହେଁ, କିନ୍ତୁ ତାହା ସାହାଯ୍ୟରେ ତା' ଉପରେ ଆଉ କେତେକ ଘର ମଧ୍ୟ ତିଆରି ହୋଇଛି ।

ସେହିପରି କେନ୍ଦ୍ରର ବର୍ତ୍ତମାନ ପ୍ରଧାନ ଗେଟ୍ ପାଖରେ ଜଳ ଯୋଗାଣ ପାଇଁ ଗୋଟିଏ ବଡ଼ କୂଅ ଖୋଳା ଯାଇଥିଲା । ତାହା ମଧ୍ୟ ଦିନକ ମଧ୍ୟରେ ଗାଏବ ହୋଇଗଲା ।

କଟକ ବାହାରେ ଚାନ୍ଦା ସଂଗ୍ରହ ପାଇଁ ମୋର ବନ୍ଧୁ ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି ଓ ଶ୍ରୀ ରୂପଚନ୍ଦ ଶର୍ମାଙ୍କୁ ସାଙ୍ଗରେ ଧରି ରାଉରକେଲା, ବଡ଼ବିଲ, ଜୋଡ଼ା ପରି ବହୁ ଅଞ୍ଚଳରେ ତିନି ଦିନ ଧରି ଆମେ ବୁଲିଲୁ । ସେତେବେଳେ ବଇ ଭାଇ ଏମ୍. ଏଲ୍. ଏ. ଥାଆନ୍ତି । ତେଣୁ ଆମ୍ଭମାନଙ୍କୁ ଡାକ ବଙ୍ଗଳାରେ ରହିବାକୁ ସୁବିଧା ମିଳେ ।

ବଡ଼ବିଲରେ ଦିନେ ଏପରି ହେଲା ଯେ ଜଣେ ବଡ଼ ଅବକାଶ ଅଫିସର ପୁରା ଡାକବଙ୍ଗଳା ଦଖଲ କରି ବଡ଼ ଆଡ଼୍ଡା ଚଉଡ଼ାରେ ରହିଥିଲେ । ସେ ସରକାରୀ ପରିଦର୍ଶନରେ ଯାଇଥିଲେ । କିନ୍ତୁ ସ୍ୱାଡ଼େ ମଦ ବିକ୍ରେତାମାନଙ୍କଠାରୁ ମଦ, ମାଂସ ଇତ୍ୟାଦିର ବ୍ୟବସ୍ଥା ହୋଇଥାଏ । ସେଥିର ଆନୁସଙ୍ଗିକ ଯାହା ଦରକାର ତାହା ମଧ୍ୟ ବ୍ୟବସ୍ଥା ହୋଇଥିଲା । ଆମ୍ଭେମାନେ ରାତିରେ ସେଠାରେ ପହଞ୍ଚିବା ବେଳକୁ

ସ୍ଥାନ ମିଳିଲା ନାହିଁ । ସୁତରାଂ ବଇ ଭାଇ ଇଂରାଜୀରେ କଥା ଆରମ୍ଭ କରି କହିଲେ, **"M.L As are entitled to occupy the Dak Bangalows and to receive free medical facilities everywhere."** ସ୍ୱେର ମନ ଗଣ୍ଡୁଳିରେ । ସେ ମହାଶୟ ସ୍ତ୍ରୀନଆରେ ଆମ୍ଭମାନଙ୍କୁ ଯୋଡ଼ିଏ ବଖରା ଛାଡ଼ିଦେଲେ । ଆମ ତିନି ଜଣଙ୍କ ଭିତରୁ ମୋର ଚେହେରା ଭଲ ଥିବାରୁ ମୋତେ **M. L. A.** ବୋଲି ଭାବି ମୋ ସହିତ ନାନାଦି ରାଜନୀତି ଚର୍ଚ୍ଚା କଲେ । ବଇ ଭାଇଙ୍କ ଇସାରାରେ ଏ ସମୟରେ ମୁଁ ଚୁପ୍ ରହିବାକୁ କହିଲି । ଶେଷରେ କ'ଣ ହେଲା ଯେ ରାତି ରାତି ସେ ମହାଶୟ ଡାକବଙ୍ଗଳା ଛାଡ଼ି ବିଦାୟ ନେଲେ । ଆମେ ଆରାମରେ ସେଠାରେ ରହିଲୁ ।

ଜୋଡ଼ାରେ ଆମ୍ଭମାନଙ୍କୁ ଏକ ମାସ ରହିବାକୁ ପଡ଼ିଥିଲା । ରାଉରକେଲା, ବଡ଼ବିଲ, ଜୋଡ଼ାର ମାଙ୍ଗାନିଜ ଓ ଲୁହା ପଥର ଖଣି ଅଞ୍ଚଳରେ ପ୍ରତ୍ୟେକ ଜାଗାରେ ଲୁହାର ଅବଶିଷ୍ଟାଂଶ ପଡ଼ିଥାଏ । ସୁତରାଂ ସମସ୍ତେ-ମୋତେ ପରାମର୍ଶ ଦେଲେ ଯେ ଏଠାରେ ଜୋତା ବ୍ୟବହାର ନ କଲେ ହଠାତ୍ ଧନୁଷ୍ଟଙ୍କାର ରୋଗାକ୍ରାନ୍ତ ହେବାର ଖୁବ୍ ସମ୍ଭାବନା । ସେଥିରୁ କିନ୍ତୁ ମୋତେ ଭଗବାନ ରକ୍ଷାକଲେ ।

ବିଧାନ ସଭାର ବୈଠକ ସମୟରେ ବଇଭାଇ ବରାବର ଭୁବନେଶ୍ୱରରେ ରହନ୍ତି । ମୁଁ ମଧ୍ୟ ଭୁବନେଶ୍ୱରରେ ରହେ । ଆମେ ଦୁହେଁ ମିଶି ସବୁ ସଭ୍ୟ ଓ ମନ୍ତ୍ରୀମାନଙ୍କୁ ବାରମ୍ବାର ସାକ୍ଷାତ କରୁ । ଆମକୁ ଦେଖି ସମସ୍ତେ ପରିହାସ କରି କହନ୍ତି ଯେ ରାମ ଲକ୍ଷ୍ମଣ ଯୋଡ଼ି ଆସିଲେ । ସେତେବେଳେ ଭୁବନେଶ୍ୱରରେ ଏତେ ଗଛପତ୍ର ନଥିଲା । ନୂଆ ନୂଆ ରାସ୍ତା ତିଆରି ହେଉଥାଏ । ଏଥିରେ ଖରାଦିନରେ ବୁଲିବାରେ ଗୋଡ଼ ପୋଡ଼ି ଯାଉଥାଏ । ଏପରି ସାଧନା ଫଳରେ ପ୍ରଭାବିତ ହୋଇ ବହୁ ସଭ୍ୟ କେନ୍ଦ୍ରକୁ ସାହାଯ୍ୟ କରିବା ପାଇଁ ଆଗ୍ରହ ପ୍ରକାଶ କଲେ । ସେଥିରେ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଅନ୍ୟତମ । ଶ୍ରୀ ସିଂହଦେଓ ପରେ ମନ୍ତ୍ରୀ ହେଲେ । ମୁଖ୍ୟମନ୍ତ୍ରୀ ମଧ୍ୟ ହେଲେ । ସଦାସର୍ବଦା ଆମେ ତାଙ୍କର ସହାନୁଭୂତି ପାଉଥିଲୁ ।

ଏହିପରି ସାହାଯ୍ୟ ପାଇଁ ଆମେ ଦିଲ୍ଲୀ ମଧ୍ୟ ଯାଇଥିଲୁ । ଦିନେ ଏପରି ହେଲା ଯେ ଦିଲ୍ଲୀ ରାସ୍ତାରେ ଖାଲି ଗୋଡ଼ରେ ବୁଲିବାରୁ ପିଚୁ ଲାଗିଗଲା ଏବଂ ଏ ପିଚୁ କାଢୁ କାଢୁ ଠାଏ ଠାଏ ଚମଡ଼ା ମଧ୍ୟ ଛାଡ଼ିଗଲା । ସାଧନା ଓ ତ୍ୟାଗର ମୂଲ୍ୟ ଅଛି । ଦିଲ୍ଲୀରେ ମଧ୍ୟ ଆମ୍ଭେମାନେ ବହୁ ତତ୍କାଳୀନ ଲୋକସଭା ସଦସ୍ୟଙ୍କଠାରୁ ଅନେକ ରକମ ସାହାଯ୍ୟ ପାଇଲୁ । ଏମାନଙ୍କ ମଧ୍ୟରୁ ଶ୍ରୀ ହରିହର ପଟେଲ ରାଜ୍ୟର ମନ୍ତ୍ରୀ ହେବା ସମୟରେ ଦିଲ୍ଲୀର ସବୁ କଥା ମନେ ପକାଇଲେ । ସେ ମଧ୍ୟ ମନ୍ତ୍ରୀ ଥିବା ସମୟରେ କେନ୍ଦ୍ରକୁ ଯଥେଷ୍ଟ ସାହାଯ୍ୟ କରିଥିଲେ । ଏହିପରି ବୁଲାବୁଲି କରିବାଦ୍ୱାରା ମୋର ଦେହ ଅନେକ ଦୁର୍ବଳ ହୋଇପଡ଼ିଲା ।

ତେଣୁ ଏହି ଦୁଇ ବର୍ଷ ହେଉଛି ମୋ ଜୀବନର ଅତି କଷ୍ଟକର ସମୟ । ରାତି ଦିନ ହେଲି ଚିନ୍ତା । ଖାଇବା, ପିଇବା ଠିକ୍ ଠିକଣା ନାହିଁ । ଓଳିଏ ଖାଇବା ହେତୁ ମଧ୍ୟ ମୁଁ ଦୁର୍ବଳ ଅନୁଭବ କରିବାକୁ ଲାଗିଲି । ଦିନମା ୬ ଘଣ୍ଟାଠାରୁ ବାରଘଣ୍ଟା ପର୍ଯ୍ୟନ୍ତ ପାଣି ପିଉ ନଥିଲି । ଫଳରେ ବିଶେଷତଃ ଗରମ ଦିନରେ ଏତେ ଶୋଷ ହେଉଥାଏ ଯେ ରାତି ଅଧରେ ଚିତ୍କାର କରି ଉଠି ମୋ ସ୍ତ୍ରୀଙ୍କୁ ପାଣି ଗିଲାସେ ମାଗି ପକାଏ । ସେ ମୋତେ ମୋ ଶପଥ କଥା ମନେ ପକାଇ ଦିଅନ୍ତି । ଏହିକୁ ହେତୁ ଅନିଦ୍ରା ରୋଗ, ସ୍ୱଳ୍ପ ରକ୍ତଚାପ ପରି ବହୁ ରୋଗ ମୋତେ ଆକ୍ରମଣ କଲା । ଥରେ ଥରେ ଏପରି ହେଲା ଯେ ମୁଁ ମୋ ସାମନାରେ ଲୋକଙ୍କୁ ଦେଖୁଥିଲେ ମଧ୍ୟ ଓ ସେମାନଙ୍କ କଥା ଶୁଣୁଥିଲେ ମଧ୍ୟ ସେମାନଙ୍କ ସହିତ କଥାବାର୍ତ୍ତା କିଛି ସମୟ ପାଇଁ କରିପାରୁ ନଥାଏ । ପ୍ରାଣ ଯେପରି ଚାଲିଯିବ ଏହିପରି ଅନୁଭବ କରୁଥାଏ । ବେଳେ ବେଳେ ଆଖିକୁ ଝାପସା ଦେଖାଯାଉଥାଏ ।

ମୂଳରୁ ହିଁ କଳା ବିକାଶ କେନ୍ଦ୍ରର ସଦୈବ ଚିନ୍ତା ଓ ଅକ୍ଲାନ୍ତ ପରିଶ୍ରମ ଯୋଗୁ ମୋର ସ୍ୱାସ୍ଥ୍ୟ ଏକେବାରେ ଭାଙ୍ଗି ପଡ଼ିଥିଲା । କୌଣସି ଔଷଧ ପେଟକୁ ଗଲା ନାହିଁ କି କିଛି ଖାଇବା ମଧ୍ୟ ହଜମ ହେଲା ନାହିଁ । ଫଳରେ କଟକରେ ଜଣେ ଆୟୁର୍ବେଦିକ କବିରାଜଙ୍କ ଚିକିତ୍ସାଧୀନ ରହିବାକୁ ପଡ଼ିଲା । ସେ ଏପରି ଗୋଟିଏ ଔଷଧ ଦେଲେ ଯେ ତା ସହିତ ଦହି ଛଡ଼ା କିଛି ଖାଇବାକୁ ହୁଏ ନାହିଁ, ଏପରିକି ଜଳ ମଧ୍ୟ ନିଷେଧ । ଏହିପରି ଅବସ୍ଥାରେ ମୋତେ ଛଅ ମାସ କଟାଇବାକୁ ପଡ଼ିଲା ଏବଂ ତାଙ୍କ ପରାମର୍ଶରେ ଦିନକୁ ଦିନ ଦହିର ମାତ୍ରା ବଢ଼ାଇବାକୁ ପଡ଼ିଲା । ଧୀରେ ଧୀରେ ମୁଁ ଦିନକୁ ତିନି ସେର ଦହି ଖାଇବାକୁ ଲାଗିଲି । କେବଳ ସେ ଔଷଧ ଓ ଏ ଦହି ଛଡ଼ା ଅନ୍ୟ ଖାଦ୍ୟପେୟ ଏକେବାରେ ବନ୍ଦ । ଏପରି ଅବସ୍ଥାରେ ମଧ୍ୟ ମୁଁ କେନ୍ଦ୍ରର ପିଲାମାନଙ୍କ ସହିତ ଖଡ଼ଗପୁର, ଟାଟାନଗର, କଲିକତା ଏପରିକି ବମ୍ବେକୁ ମଧ୍ୟ ଗଲି ଏବଂ ବହୁ କଷ୍ଟରେ ମୋତେ ଏତେ ମାତ୍ରାରେ ଦହି ଯୋଗାଡ଼ କରିବାକୁ ପଡ଼ୁଥାଏ । ଏହି ଚିକିତ୍ସାରେ ମୋର ପେଟର ରୋଗ ସେତେବେଳେ ଏକାବାର ଚାଲିଗଲା ଓ ମୁଁ ନୂତନ ଜୀବନ ଲାଭ କଲି ।

ସେହି ବର୍ଷ ପୁଣି ମୋର ସ୍ତ୍ରୀଙ୍କର ବାତଜ୍ୱର, ଗୋଡ଼ଫୁଲା ଇତ୍ୟାଦି ରୋଗ ଆରମ୍ଭ ହେଲା । ଘରେ ଆମର କେହି ପିଲାପିଲି ନାହାନ୍ତି । ଆମେ କେବଳ ଦୁଇ ପ୍ରାଣୀ । ତାଙ୍କୁ ଦେଖିବ କିଏ ? ତାଙ୍କର ସେବା ଶୁଶ୍ରୂଷା ପ୍ରତି ଏତେ ଅବହେଳା କଲି ଯେ ଫଳରେ ପରେ ଚେଷ୍ଟା କଲେ ମଧ୍ୟ ସେ ରୋଗମୁକ୍ତ ହୋଇ ପାରିଲେ ନାହିଁ । ଆଜି ସେ ଚିର ଶଯ୍ୟାଶାୟୀ ହୋଇ ପଡ଼ିଛନ୍ତି । ମୋର ଅବହେଳା ଯୋଗୁ ଏହା ଘଟିଲା । ଭଗବାନ ମୋତେ କ୍ଷମା କରିବେ କି ନା କେଜାଣି । ସେହିପରି କଟକରେ ମୋର ଏକମାତ୍ର ବଡ଼ ଭାଇଙ୍କର ଅନିଦ୍ରା ପରି କେତେକ ରୋଗ ହେଲା ।

ଡାକ୍ତରଙ୍କ ପରାମର୍ଶରେ ତାଙ୍କୁ ବମ୍ବେରେ ଯାଇ ମୁଣ୍ଡରେ **Electric shock** ନେବାକୁ ପଡ଼ିଲା ସେ ମୋତେ ସାଙ୍ଗରେ ନେବାପାଇଁ ଚାହୁଁଥିଲେ । ମୋର ମଧ୍ୟ ସେତକ କର୍ତ୍ତବ୍ୟ ଥିଲା, କିନ୍ତୁ ଭାବନାଠାରୁ କର୍ତ୍ତବ୍ୟ ବଡ଼ ମନେକରି ମୁଁ ଏ ସେବାରୁ ମଧ୍ୟ ବଞ୍ଚିତ ହେଲି । ଆଉଥରେ ମଧ୍ୟ ଏହିପରି **Electric shock** ନେବାପାଇଁ ତାଙ୍କୁ ବମ୍ବେ ଯିବାକୁ ପଡ଼ିଥିଲା । ସେଥିର ମଧ୍ୟ ମୁଁ ତାଙ୍କ ସହିତ ଯାଇପାରିଲି ନାହିଁ । ସେଥିପାଇଁ ମୋ ମନରେ ସବୁଦିନ ପାଇଁ ଅବଶୋଧ ରହିଗଲା । ନିଜର ଚଳାଚଳ ପାଇଁ କଟକରେ ମୋର ନିଜର ଅଳଙ୍କାର ବ୍ୟବସାୟ ରହିଛି । ସେ ଦୋକାନ ମଧ୍ୟ ମୋର ବନ୍ଧୁ ମୁକୁନ୍ଦ ଭାଇଙ୍କୁ ସମର୍ପି ଦେଇ ଛାଡ଼ିଦେଲି । ଆଜିକୁ ପଚଶ ବର୍ଷ ହେଲା ସେ ଦୋକାନକୁ କେବେ ଅନାଇ ନାହିଁ । କେବଳ ବର୍ଷକୁ ଥରେ ଦୀପାବଳି ଦିନ ପୂଜା କରିବାକୁ ଯାଏ । ମୁକୁନ୍ଦ ଭାଇ ଉଦାର ମନରେ ମୋତେ ସାମାଜିକ କ୍ଷେତ୍ରରେ ଛାଡ଼ି ଦେଇଛନ୍ତି । ସେ ରୋଜଗାର କରନ୍ତି ଓ ମୁଁ ଚଳେ । ତାଙ୍କ ମନରେ କିଛି ହେଲେ ଦୁଃଖ ନାହିଁ । ଭଗବାନ ବୋଧହୁଏ ତାଙ୍କୁ ଏ ପ୍ରେରଣା ଦେଇଛନ୍ତି । ଏହି ସମୟରେ ପୁଣି ମୋର ଆଉ ଗୋଟିଏ ପ୍ରିୟ ଅନୁଷ୍ଠାନ ଗୁଜରାଟ ସମାଜର କାର୍ଯ୍ୟରୁ ଅବ୍ୟାହତି ନେବାକୁ ପଡ଼ିଲା ।

ଅନେକ ବିସ୍ମୟକର ଘଟଣା ମଧ୍ୟ ଘଟିଛି । ଦିନେ ଦେଖାଗଲା ଯେ ମୂଲିଆ ମିସ୍ତ୍ରୀମାନଙ୍କୁ ସେ ଦିନ ମୂଲ ଦେବାର କଥା । ପାଖରେ ପଇସାଟିଏ ନାହିଁ । ଘରେ ଆସି ଟ୍ରେଜେରୀ ଖୋଲି ସ୍ୱଳ୍ପ ସଞ୍ଚିତ ଟଙ୍କା ଗଣିଲି । ଦେଖିଲି ଯେତିକ ଟଙ୍କା ସେମାନଙ୍କ ପାଇଁ ଦରକାର, ଠିକ୍ ସେତକ ବାହାରିଲା । ଏହିପରି ଅନେକ ଥର ଟଙ୍କା ଅଭାବ ଜନିତ କାର୍ଯ୍ୟ କରିବାକୁ ଅସୁବିଧା ଘଟିଛି । କ୍ଷଣକ ପରେ ତାହା ପୁଣି ସଜାଡ଼ି ହୋଇ ଯାଇଛି ।

ଏହିପରି ଦିନରାତି ଅକ୍ଲାନ୍ତ ପରିଶ୍ରମ ଓ ଚେଷ୍ଟା ଫଳରେ ଅନୁଷ୍ଠାନର ଗୃହ ନିର୍ମାଣ ପାଇଁ ଆବଶ୍ୟକୀୟ ଅର୍ଥସଂଗ୍ରହ କରାଗଲା । ମୋର ଅନୁପସ୍ଥିତିରେ କେନ୍ଦ୍ରର ପରିଚାଳନା ଶ୍ରୀ ଆର୍ତ୍ତପ୍ରାଣ ନନ୍ଦ ବୁଝାବୁଝି କରୁଥିଲେ । ଆଉ ଜଣେ ବନ୍ଧୁ ସେତେବେଳର ଡି ଏସ୍. ପି. ଶ୍ରୀ ଜେ ସାଇମନସ୍ ମଧ୍ୟ କେନ୍ଦ୍ରକୁ ସକ୍ରିୟ ଭାବରେ ସାହାଯ୍ୟ କରୁଥିଲେ । ଏହିପରି ବହୁ ଲୋକଙ୍କ ମିଳିତ ଉଦ୍ୟମରେ ଠିକ ଡିସେମ୍ବର ମାସ ଶେଷ ଭାଗରେ ତଳ ମହଲା କାର୍ଯ୍ୟ ସରି ଆସିଲା ଏବଂ ସେତେବେଳର ଭାରତ ସରକାରଙ୍କ ସାଂସ୍କୃତିକ ବିଭାଗ ମନ୍ତ୍ରୀ ଶ୍ରୀ ହୁମାୟୁନ୍ କବୀରଙ୍କ ଦ୍ୱାରା ଏହା ବିଧିବଦ୍ଧ ଭାବରେ ଉଦ୍‌ଘାଟିତ ହେଲା । ସେହି ମହାଶୟ ମଧ୍ୟ ତାଙ୍କର ସ୍ୱପାଣ୍ଠିରୁ ୫,୦୦୦ ଟଙ୍କା ଦାନକଲେ । ଏହିପରି ସବୁ ଦିଗରେ କେନ୍ଦ୍ରର ଉନ୍ନତି ହେବାଦ୍ୱାରା ବହୁ ଲୋକ ଏହାକୁ ଈର୍ଷା ମଧ୍ୟ କଲେ, କେତେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି କେନ୍ଦ୍ରରେ ପଶିବାକୁ ଆରମ୍ଭ କଲେ । ଏହା ଆମ୍ଭେ ଅନେକ ଦିନ ପର୍ଯ୍ୟନ୍ତ ଜାଣିପାରିଲୁ ନାହିଁ । ନଜାଣି ପାରିଲେ

ମଧ୍ୟ ଏହା ଭିତରେ ଭିତରେ କେନ୍ଦ୍ରକୁ ଦୁର୍ବଳ କରୁଥାଏ । ଫଳରେ ଯେତେବେଳେ ଦିଲ୍ଲୀ ସଙ୍ଗୀତ ନାଟକ ଏକାଡ଼େମୀର ଅଧ୍ୟକ୍ଷା ଶ୍ରୀମତୀ କମଳା ଦେବୀ ଚଟ୍ଟୋପାଧ୍ୟାୟ ଦୁଇ ମହଲାର ଶୁଭ ଦେଲେ, ସେତେବେଳେ କର୍ମୀମାନଙ୍କର ଉତ୍ସାହର ଅଭାବ ଯୋଗୁ ଏବଂ କେନ୍ଦ୍ରରେ ମତଭେଦର ସୂତ୍ରପାତ ହେବା ଯୋଗୁ ଦୋତାଲା କାର୍ଯ୍ୟ ସହଜରେ ଶେଷ ହୋଇ ପାରିଲା ନାହିଁ । ଖଣ୍ଡ ଖଣ୍ଡ କରି ଛାତ ପକାଇବାକୁ ପଡ଼ିଲା । ଫଳରେ ଉପର ମହଲାର ଛାତ ସେତେ ମଜବୁତ୍ ହୋଇ ପାରିଲା ନାହିଁ ।

ଭଜ ସାହେବଙ୍କ ଦ୍ୱାରା ନିର୍ମିତ ଗୃହ ନିର୍ମାଣ ନକ୍ସାନୁସାରେ ମହାବିଦ୍ୟାଳୟର ଦୁଇ ମହଲା କୋଠା ତିଆରି ହେଲା । କିନ୍ତୁ ଏଥିପାଇଁ ବହୁ ଟଙ୍କା ଧାର ଆଣିବାକୁ ପଡ଼ିଲା । ନକ୍ସାର ପରବର୍ତ୍ତୀ କାର୍ଯ୍ୟ ଥିଲା ରଙ୍ଗମଞ୍ଚ ନିର୍ମାଣ । ୧୭,୦୦୦ ଟଙ୍କା ଅଟକଳରେ ଏହି କାର୍ଯ୍ୟ ପାଇଁ ଭାରତ ସରକାରଙ୍କ ଦ୍ୱାରସ୍ଥ ହେଲୁ । ଦିଲ୍ଲୀରେ ଯାଇ ପ୍ରଫେସର ହୁମାୟୁନ କବୀରଙ୍କୁ ଭେଟିଲୁ । ଶିକ୍ଷା ସଚିବ ଶ୍ରୀ ଭେଙ୍କଟରମଣ ମଧ୍ୟ ଆମ ପାଇଁ ସୁପାରିଶ କଲେ । ଫଳରେ ୨୪,୦୦୦ ଟଙ୍କା ମଞ୍ଜୁର ହୋଇ ପ୍ରଥମ କିସ୍ତିବାବଦ ୪,୮୦୦ ଟଙ୍କା ଆସିଲା । ସାହାଯ୍ୟର ନିୟମାନୁସାରେ କେନ୍ଦ୍ରର ମଧ୍ୟ ସେତିକି ଟଙ୍କା ଖର୍ଚ୍ଚ କରିବାର କଥା । ସବୁଆଡ଼ୁ ଭାବିଚିନ୍ତି ବନ୍ଧୁମାନଙ୍କୁ ପରାମର୍ଶ କରି ଠିକ୍ କଲୁ ଯେ ଏ ସାହାଯ୍ୟ ଆଣିବା ନାହିଁ କିମ୍ବା ମଞ୍ଚ ତିଆରି କରିବା ନାହିଁ, କିନ୍ତୁ ଶ୍ରୀଯୁକ୍ତ ବାମାବାବୁ ଗୋଟିଏ ବୈଠକରେ ଆମ୍ଭମାନଙ୍କୁ ଖୁବ୍ ଉତ୍ସାହିତ କଲେ ଏବଂ ସାହାସ ବାନ୍ଧି କାର୍ଯ୍ୟ କରିବାକୁ ପରାମର୍ଶ ଦେଲେ । ସୁତରାଂ ଆରମ୍ଭ ହେଲା ରଙ୍ଗମଞ୍ଚର ନିର୍ମାଣ କାର୍ଯ୍ୟ । ପୁଣି ଶପଥ ଗ୍ରହଣ କରାଗଲା । ଅନେକ ଆଡ଼ୁ ଚେଷ୍ଟା ମଧ୍ୟ କରାଗଲା । କିନ୍ତୁ ଅନୁଷ୍ଠାନରେ କଳହ ପଶିବା ଦ୍ୱାରା କାର୍ଯ୍ୟ ଅଗେଇ ପାରିଲା ନାହିଁ କି ବିଶେଷ ଉତ୍ସାହର ସହିତ କାର୍ଯ୍ୟ ମଧ୍ୟ ହେଲା ନାହିଁ । ବମ୍ବେର ଆମର ପ୍ରଧାନ ପୃଷ୍ଠପୋଷକ ଶ୍ରୀ ସୁପାରିଓ୍ୱାଲ ସେ ସମୟରେ କଟକ ଆସି କେନ୍ଦ୍ର ପରିଦର୍ଶନ କଲେ । ଆମର ଅସୁବିଧା ଦେଖି ସେ ପୁଣି ଆମ୍ଭମାନଙ୍କୁ ବମ୍ବେ ଯିବାପାଇଁ ଉତ୍ସାହିତ କଲେ । ତେଣୁ ମୁଁ ଦୁଇ ତିନିମାସ ବମ୍ବେରେ ରହିଲି ଏବଂ ୧୯୬୪ର ଡିସେମ୍ବର ୨୮ରୁ ୩୦ ତାରିଖ ତିନିଦିନ ଧରି ବମ୍ବେର ବିଶାଳ ରଙ୍ଗମଞ୍ଚ "ବିରଳା ମାତୃଶ୍ରୀ ଗୃହ"ରେ ଓଡ଼ିଶାର କଳାକାରମାନଙ୍କ ଦ୍ୱାରା ବିଚିତ୍ରାନୁଷ୍ଠାନ ପରିବେଷଣ କରାଗଲା । ବରହମ୍ପୁରର ଶ୍ରୀ ଭଗବାନ ସାହୁଙ୍କର ଲୋକନୃତ୍ୟ ଦଳ, ମୟୁରଭଞ୍ଜର ଛଉନୃତ୍ୟ, ପୁରୀର ଗୋଟିପୁଅ ନୃତ୍ୟ ଦଳ ଆମ ସହିତ ଯୋଗ ଦେଇଥିଲେ । କେନ୍ଦ୍ରର କଳାକାରମାନେ ଓଡ଼ିଶୀ, ଲୋକନୃତ୍ୟ ଓ ନୃତ୍ୟ ନାଟିକା "କୃଷ୍ଣ ଚରିତମ୍" ପରିବେଷଣ କଲେ । ସର୍ବମୋଟ ୧୦୩ ଜଣ ବିଶିଷ୍ଟ ଗୋଟିଏ ବଡ଼ ଦଳ ଗୋଟିଏ ସ୍ୱତନ୍ତ୍ର ବଗିରେ ବମ୍ବେରେ ପହଞ୍ଚିବାରୁ ସମସ୍ତେ ବିସ୍ମିତ ହୋଇପଡ଼ିଲେ । ଏତେ ବଡ଼ ଦଳ ଏତେ ଦୂରରୁ ବମ୍ବେରେ ତା ପୂର୍ବରୁ ଆସିବା

କଥା କେହି କେବେ ଦେଖି ନଥିଲେ କିମ୍ବା ଶୁଣି ନଥିଲେ । ଓଡ଼ିଶାର କଳା ସଂସ୍କୃତି ସମ୍ପର୍କରେ ଘରେ ଘରେ ଚର୍ଚ୍ଚା ହେଲା । ସ୍ଥାନୀୟ ଖବରକାଗଜ ମାନଙ୍କର ସମ୍ପାଦକୀୟ ଟିପ୍ପଣୀରେ ମଧ୍ୟ କେନ୍ଦ୍ର କଥା ସ୍ଥାନ ପାଇଲା । ଶିଳ୍ପୀମାନଙ୍କର ଉଚ୍ଛ୍ୱସିତ ସମ୍ବର୍ଦ୍ଧନାର ଆୟୋଜନ ମଧ୍ୟ କରାଯାଇଥିଲା । ବମ୍ବେ ନିକଟସ୍ଥ ସମୁଦ୍ର ମଧ୍ୟରେ ଅବସ୍ଥିତ 'ଏଲିଫାଣ୍ଟା' ଗୁମ୍ଫାପରି ବହୁ ଦର୍ଶନୀୟ ସ୍ଥାନ ମଧ୍ୟ ପରିଦର୍ଶନ ପାଇଁ ଶିଳ୍ପୀ ମାନଙ୍କୁ ନିଆଗଲା । ଖାଇବାକୁ ତ ଅଭାବ ନଥାଏ । ଯେତେବେଳେ ଯାହା ଗୁହିଁଲେ ତାହା ମିଳୁଥାଏ, କିନ୍ତୁ ଏସବୁ ଖାଦ୍ୟ ବହୁ ମୂଲ୍ୟର ହେଲେ ମଧ୍ୟ ନିରାମିଷ । ସୁତରାଂ ଓଡ଼ିଶାର କେତେ ଲୋକ ନାକ ଟେକିଲେ । "କିହୋ ବାବୁ, ମାଛ ମାଂସ କାହିଁ ?" ଉଦ୍ୟୋକ୍ତାମାନେ ସମସ୍ତେ ଥିଲେ ପରମ ବୈଷ୍ଣବ ଧର୍ମୀ । ସେମାନେ ମାଛ, ମାଂସ ନାମ ଶୁଣିଲେ ବାନ୍ତି କରି ପକାଇବେ । ତେବେ ପ୍ରଚୁର ପରିମାଣରେ ଦୁଧ ଦହି ମିଳିଲା, ହେଲେ ମଧ୍ୟ ମାଛ, ମାଂସ ଯେ ନାହିଁ । କଳାକାରମାନେ ନିଷ୍ଟସ୍ କଷ୍ଟରେ (?) ଦିନ କାଟିଲେ ! ଫେରିବା ବେଳେ ପ୍ରତ୍ୟେକ କଳାକାରଙ୍କୁ ଉଦ୍ୟୋକ୍ତାମାନଙ୍କ ତରଫରୁ ନାନା ଉପହାର ସହିତ ବମ୍ବେର ବିଖ୍ୟାତ 'ହାଲୁଆ' ମଧ୍ୟ ସାଙ୍ଗରେ ଦିଆଗଲା । ତାହା ସମସ୍ତେ କାଟକ ପହଞ୍ଚିବା ପର୍ଯ୍ୟନ୍ତ ଖାଇଲେ ଏବଂ ଘରକୁ ମଧ୍ୟ ନେଲେ ।

ତିନି ଦିନର ଏହି ସାହାଯ୍ୟ ରଜନୀର ଟିକେଟ ବିକ୍ରୟ ଓ ଦାନ ଜରିଆରେ ୯୧,୦୦୦ ଟଙ୍କା ମିଳିଲା । ସେହି ଟଙ୍କାରୁ ୭୧,୧୧୧ ଟଙ୍କା ମୋଟେ ଥଳୀ ଆକାରରେ ଉପହାର ଦେବାର ଘୋଷଣା କଲେ । କିନ୍ତୁ ପରେ ଖର୍ଚ୍ଚର ହିସାବ କରିବାରେ ଦେଖାଗଲା ଯେ ଅନେକଗୁଡ଼ିଏ ଖର୍ଚ୍ଚ ହୋଇ ଯାଇଛି । ସୁତରାଂ ଟଙ୍କାର ଅଭାବ ପଡ଼ିଲା । ତାହା କିନ୍ତୁ ପରେ ପୂରଣ କରାଗଲା ।

ବମ୍ବେର ସାଂସ୍କୃତିକ ଭ୍ରମଣ ହେଲା କେନ୍ଦ୍ରର କାଳ । ପରେ ପରେ ନାନା ଆତ୍ମ କଳହ ବିବାଦ ମୁଣ୍ଡ ଟେକିଲା । ଯେଉଁମାନେ ଏହି ଭ୍ରମଣରେ ବମ୍ବେ ଯାଇ ପାରିଲେ ନାହିଁ ସେମାନେ ଆମର ଘୋର ବିରୋଧୀ ହେଲେ । ଯେଉଁମାନଙ୍କର ପିଲାଏ ବମ୍ବେ ଯିବା ପାଇଁ ଅବସର ପାଇଲେ ନାହିଁ ସେମାନେ ମଧ୍ୟ ଆମର ବିରୋଧ କଲେ । ସମସ୍ତେ ତ କୁଙ୍କୁମ ପରି କଳାକାର ହୋଇ ପାରିବେ ନାହିଁ । ସୁତରାଂ କେତେକ କଳାକାର ବମ୍ବେରେ ସୁନାମ ଅର୍ଜି ପାରିଲେ ନାହିଁ । ସେମାନଙ୍କର ଅଭିଭାବକମାନେ ମଧ୍ୟ ହେଲେ ଆମର ବିରୋଧୀ । ଏହିପରି ବହୁ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଲା । ଗୃହ କ୍ଳେଶର ଆବିର୍ଭାବ ମୁଁ ୧୯୬୨ରୁ ଲକ୍ଷ୍ୟ କରି ଆସୁଥିଲି । ସୁତରାଂ ସାଧାରଣ ସମ୍ପାଦକ ପଦରୁ ମୁଁ ଅବ୍ୟାହତି ନେଇ ଶ୍ରୀ ବିମଳ ଚନ୍ଦ୍ର ଘୋଷଙ୍କୁ ଏ ଭାରଦେଲି । ପରେ ପୁଣି ଶ୍ରୀ ଖଗେନ୍ ମିଶ୍ର କେନ୍ଦ୍ରର ସମ୍ପାଦକ ରହିଲେ । ୧୯୬୭ ସାଧାରଣ ନିର୍ବାଚନରେ ଆମ୍ଭେମାନେ ସମସ୍ତେ ଓହରିଗଲୁ ।

ଫଳରେ ଶ୍ରୀ ଶ୍ୟାମ ସୁନ୍ଦର ପରିଜା ହେଲେ ସାଧାରଣ ସମ୍ପାଦକ । ୧୯୭୫ ଓ ୧୯୭୬ ଏହି ଦୁଇ ବର୍ଷରେ କେନ୍ଦ୍ରର ସବୁ ଦିଗରେ ଅବନତି ଘଟିଲା । ଏପରିକି ଦିଲ୍ଲୀ ସଙ୍ଗୀତ ନାଟକ ଏକାଡେ଼ମୀ ଓ ରାଜ୍ୟ ସଙ୍ଗୀତ ନାଟକ ଏକାଡେ଼ମୀରୁ ସାହାଯ୍ୟ ମଧ୍ୟ ବନ୍ଦ ହୋଇଗଲା । ମୂଲ୍ୟବାନ କ୍ୟାମେରା ସହିତ କେନ୍ଦ୍ରର ବହୁ ଜିନିଷ ଚୋରି-ଗଲା ବା ନଷ୍ଟ ହେଲା ! ବମ୍ବେରୁ ଲକ୍ଷ ଲକ୍ଷ ଟଙ୍କା ଆମେ ଆଣି ଖାଇଛୁ, ଏପରିକି ବମ୍ବେରୁ ପିଲାମାନଙ୍କ ପାଇଁ ଆସିଥିବା ମିଠାଇ ବାକ୍ସରେ ଆମେମାନେ ଚୋରା ସୁନା ଆଣିଛୁ ବୋଲି ଅଭିଯୋଗ କରାଗଲା । କେନ୍ଦ୍ରର ସିମେଣ୍ଟ ଚୋରି କରିଛୁ । ଏହିପରି ବହୁ ଅଭିଯୋଗ ଆସିଲା ଏବଂ ଖବର କାଗଜରେ ପ୍ରକାଶ ପାଇଲା । ଆମର ବମ୍ବେର କାର୍ଯ୍ୟକ୍ରମ ସମୟରେ ଓଡ଼ିଶାରେ ଜଣେ ଗୁଜରାଟି ଲୋକ ସେଠାରେ ଉପସ୍ଥିତ ଥିଲେ । ସେ ମହାଶୟ କେନ୍ଦ୍ରକୁ ଏକ ହଜାର ଟଙ୍କା ପ୍ରଦାନ କରିବାକୁ ପ୍ରତିଶ୍ରୁତି ଦେଲେ । କେତେ ଦିନ ପରେ ସେ ଟଙ୍କା ସେ ଆମର ଜଣେ ସଭ୍ୟଙ୍କ ମାର୍ଫତ ଦେଇଗଲେ । ଏ ଗଣ୍ଡଗୋଳର ସୁବିଧା ନେଇ ଉକ୍ତ ସଭ୍ୟ ସେ ଟଙ୍କା କେନ୍ଦ୍ରକୁ ଦେଲେ ନାହିଁ । ଅଥଚ ବମ୍ବେ ଯାଇ ଆମ ବିରୁଦ୍ଧରେ ପ୍ରଚାର କରି ଆସିଲେ ଏବଂ ଏଠାରେ ମଧ୍ୟ ଆମକୁ ବଦନାମ କରିବା ଉଦ୍ୟମରେ ସାହାଯ୍ୟ କଲେ । ସେପରି କ୍ଷୁଦ୍ର ଓ ସଂକୀର୍ଣ୍ଣ ଭାବାପନ୍ନ ଲୋକ ବୁଝି ପାରିଲେ ନାହିଁ କିମ୍ବା ଜାଣିଶୁଣି ବୁଝିବାକୁ ଚେଷ୍ଟା କରି ନଥିଲେ ଯେ ଧନ ଅର୍ଜନ କରିବାକୁ ଚାହିଁଥିଲେ ମୁଁ କେନ୍ଦ୍ର କାମରେ ଏତେ ପରିଶ୍ରମ କରିବାକୁ ଯାଆନ୍ତି କାହିଁକି । ମୁଁ ଯଦି ମୋର ଅଳଙ୍କାର ଦୋକାନରେ ବସିଥାଆନ୍ତି କିମ୍ବା ଚଳଚ୍ଚିତ୍ର ପ୍ରଯୋଜନା କ୍ଷେତ୍ରରେ ପୂରା ସମୟ ଦେଇ କାର୍ଯ୍ୟ କରିଥାଆନ୍ତି ତାହାହେଲେ କଟକ ସହରର ଧନୀମାନଙ୍କ ମଧ୍ୟରେ ଅଗ୍ରଣୀ ହୋଇଥାଆନ୍ତି । ମୋ ପାଖରେ ଚାକିରି କରୁଥିବା ଅଧିକାଂଶ ଲୋକେ ଆଜି ଖୁବ୍ ସୁଖ ସ୍ୱଚ୍ଛନ୍ଦରେ ଅଛନ୍ତି । ଟଙ୍କା ତୋଷରପାତ କରିବା ଦୂରେ ଥାଉ ବରଂ ହଜାର ହଜାର ଟଙ୍କା କେନ୍ଦ୍ର ପାଇଁ ଖର୍ଚ୍ଚ କରିଛି । ଗୋଟିଏ ଅବସରରେ କେନ୍ଦ୍ରର ଏବଂ ମୋର ଇଜ୍ଜତ ରଖିବା ପାଇଁ ଏକାଥରକେ ୩୦,୦୦୦ ଟଙ୍କା ମୁଁ କେନ୍ଦ୍ରକୁ ଦେଇଛି, କିନ୍ତୁ ଟିକିଏ ହେଲେ କାହା ପାଖରେ ଉଲ୍ଲେଖ କରିନାହିଁ । କେବଳ ଜଣେ ଦୁ ଜଣ ବନ୍ଧୁ ଏକଥା ଜାଣନ୍ତି ଏବଂ ଜାଣନ୍ତି କେବଳ ଭଗବାନ । ଆଜି ଆଉ ସତ ମିଛର ସଫେଇ ଦେବା ଉଚିତ ମନେ କରୁନାହିଁ । ଏପରି ଅବସ୍ଥାରେ ଲୋକନିନ୍ଦାରୁ ଦୂରରେ ରହିବା ପାଇଁ ଆମେ ଯେତେ ପାରିଲୁ ଏ ସବୁ ବିଷୟରେ ଉଦାସୀନ ରହିଲୁ । କେନ୍ଦ୍ରର ଆମର ବିଶିଷ୍ଟ ବନ୍ଧୁ ପ୍ରଫେସର ବୈଦ୍ୟନାଥ ରଥ, ଯାହାଙ୍କ ବିଷୟରେ ମୁଁ ପରେ ଲେଖିବି ଗୋଟିଏ ମୂଲ୍ୟବାନ କଥା କହିଲେ, "ସମୟ ହେଉଛି ଏକମାତ୍ର ପ୍ରତିଷେଧକ । ବର୍ତ୍ତମାନ ଯେତେ ଯାହା କଲେ ବି କିଛି ହେବ ନାହିଁ । ପରେ ବେଳ ଆସିବ ଯେତେବେଳେ ସବୁ ସୁଧୁରି ଯିବ ।" ସୁତରାଂ ତାଙ୍କରି

କଥାରେ ଆମେ ପୁରା ଦୁଇବର୍ଷ ନୀରବ ଦର୍ଶକ ହିସାବରେ ଚୁପ୍ ହୋଇ ରହିଲୁ । ଶେଷରେ ସେହି କଥା ହିଁ ହେଲା । କି ଶିକ୍ଷକ, କି ଗ୍ରନ୍ଥାଗାରୀ, ଅଭିଭାବକ ଓ ସଭ୍ୟ ସଭ୍ୟା ଏପରିକି ଶୁଭେଚ୍ଛୁମାନଙ୍କ ଭିତରେ ଗୋଟିଏ ଆନ୍ଦୋଳନ ସୃଷ୍ଟି ହେଲା । ଅନୁଷ୍ଠାନକୁ ବଞ୍ଚାଇବା ପାଇଁ ସମସ୍ତେ ଏକଜୁଟ ହୋଇ ପଡ଼ିଲେ । ପୁଣି ମୋତେ ଡକରା ଆସିଲା । ଘନଘନ ସଭାସମିତି ହେଲା । ଶେଷରେ ସର୍ବସମ୍ମତି କ୍ରମେ ନୂଆ କାର୍ଯ୍ୟକାରୀ କମିଟି ଗଢ଼ାଗଲା । ଆମର ଦୁଃଖ ବେଳର ବନ୍ଧୁ ଶ୍ରୀ ବିମଳ ଘୋଷ ଏ ଦୁରବସ୍ଥାରେ ମଧ୍ୟ ସାଧାରଣ ସମ୍ପାଦକ ହି କାର୍ଯ୍ୟ ତୁଲାଇବାକୁ ଆଗଭର ହୋଇ ଆସିଲେ । ସେତେବେଳେ କିନ୍ତୁ କେନ୍ଦ୍ର ହାତରେ କିଛି ପାଣ୍ଠି ନଥାଏ । ଏପରିକି ଗୃହ ନିର୍ମାଣ ପାଣ୍ଠି ମଧ୍ୟ ଅନ୍ୟ ଆଡ଼େ ଖର୍ଚ୍ଚ ହେଲା । ଏପରି ଅବସ୍ଥାରେ ବର୍ଷକ ପରେ ଯେତେବେଳେ ମୁଁ ପୁଣି ଯୋଗଦିଏ ମୋତେ ଅନ୍ଧକାର ଦେଖାଗଲା । ଧୀରେ ଧୀରେ ପୁଣି ଏକାଡେମୀର ସାହାଯ୍ୟ ମିଳିଲା । ଅନ୍ୟ ଆଡ଼ୁ ମଧ୍ୟ ଚେଷ୍ଟା କରାଗଲା ଏବଂ ୧୯୭୧ ବେଳକୁ ପୁଣି ସବୁ ବାଟକୁ ଆସିଲା । ସେହି ସମୟର ଶିକ୍ଷା ମନ୍ତ୍ରୀ ଓ କେନ୍ଦ୍ରର ବିଶିଷ୍ଟ ଶୁଭେଚ୍ଛୁ ଶ୍ରୀ ବନମାଳି ପଟ୍ଟନାୟକ ଆମ୍ଭମାନଙ୍କୁ ଉତ୍ସାହିତ କଲେ । ସେତେ-ବେଳର ଶିକ୍ଷା ନିର୍ଦ୍ଦେଶକ ଶ୍ରୀ ବିଧୁଭୂଷଣ ଦାସ କେନ୍ଦ୍ରର ପୁରାତନ ସଭ୍ୟ । ଅନ୍ୟାନ୍ୟ ପଦସ୍ଥ କର୍ମଚାରୀ ମଧ୍ୟ କେନ୍ଦ୍ରକୁ ସହାନୁଭୂତି ଦେଖାଇଲେ । ଯାହା ଫଳରେ ୧୯୭୦-୭୧ ଆର୍ଥିକ ବର୍ଷରେ ଶିକ୍ଷା ବିଭାଗ ତରଫରୁ ୪୫,୦୦୦ ଟଙ୍କା ଅନ୍ୟ ସରକାରୀ ବିଭାଗ ତରଫରୁ ୩୦,୦୦୦ ଟଙ୍କା ଓ ଭାରତ ସରକାର୍ ସାଂସ୍କୃତିକ ବିଭାଗ ତରଫରୁ ୭୫,୦୦୦ ଟଙ୍କା ମଞ୍ଜୁର ହେଲା । ଗୃହ ନିର୍ମାଣ ପାଣ୍ଠି ପାଇଁ ବହୁ ଚାନ୍ଦା ମଧ୍ୟ ଆଦାୟ ହେଲା । ମେସର୍ସ ଇଣ୍ଡିଆନ ମେଟାଲସ ଫେରୋ ଆଲୟସ୍‌ର ମାନେଜିଂ ଡାଇରେକ୍ଟର ଡକ୍ଟର ବଂଶୀଧର ପଣ୍ଡା ୧୦,୦୦୦ ଟଙ୍କା ଏକାକାଳୀନ ସାହାଯ୍ୟ କଲେ । ପରେ ପରେ ରାଜ୍ୟ ସାଂସ୍କୃତିକ ବିଭାଗ ମଧ୍ୟ ପ୍ରତି ବର୍ଷ ଗୃହ ନିର୍ମାଣର ସାହାଯ୍ୟ ପରପର ବଢ଼ାଇଲେ । ଫଳରେ ୧୯୭୫-୭୬ ଆର୍ଥିକ ବର୍ଷ ପର୍ଯ୍ୟନ୍ତ ରଙ୍ଗମଞ୍ଚ ନିର୍ମାଣ ଓ ତାହାର ସାଜସଜ୍ଜା ବାବଦରେ ପ୍ରାୟ ପାଞ୍ଚଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇଛି । ପ୍ରାୟ ୯୭,୦୦୦ ଟଙ୍କା ଅଟକଳରେ ଆରମ୍ଭ ହୋଇଥିବା ଏହି ରଙ୍ଗମଞ୍ଚକୁ ଅତ୍ୟାଧୁନିକ ଓ ସର୍ବାଙ୍ଗ ସୁନ୍ଦର କରିବାରେ ତାହାର ଅଟକଳ ପ୍ରାୟ ଆଠ ଲକ୍ଷ ଟଙ୍କାରେ ଆସି ପହଞ୍ଚିଲା । ୧୯୭୬-୭୭ ଆର୍ଥିକ ବର୍ଷ କେନ୍ଦ୍ରର ରୌପ୍ୟ ଜୁବୁଲି ବର୍ଷ । ଏବେ ହାତରେ ଅଳ୍ପ ଧନ ରହିଛି । ସୁତରାଂ ଏହି ରୌପ୍ୟ ଜୁବୁଲି ଶେଷ ସୁଦ୍ଧା ବାକି ତିନି ଲକ୍ଷ ଟଙ୍କାର କାମ ଶେଷ କରିବା ପାଇଁ ଆମେ ଶେଷ ଥର ପୁର୍ବପରି ଶପଥ ଗ୍ରହଣ କରିଛୁ ।

ଏହି ପ୍ରସଙ୍ଗରେ ଆଉ ଗୋଟିଏ କଥା ଉଲ୍ଲେଖ କରୁଛୁ । ୧୯୭୧ ମସିହା ବେଳକୁ ଆମର ବିଶିଷ୍ଟ ବନ୍ଧୁ ଶ୍ରୀ ଏଚ୍. କେ. ଘୋଷ ରାଜସ୍ୱ ବିଭାଗର ସଚିବ ଥିଲେ । ତାଙ୍କର ସ୍ତ୍ରୀ ଶ୍ରୀମତୀ ତୃପ୍ତି ଘୋଷ ମଧ୍ୟ ଥିଲେ କେନ୍ଦ୍ରର ଜଣେ ସଭ୍ୟା ।

ସେମାନଙ୍କ ଉଦ୍ୟମରେ ଓ ଶ୍ରୀ ଘୋଷଙ୍କ ସୁପାରିଶରେ ସେତେବେଳର ରାଜସ୍ୱ ମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ କେବଳ ୧ ଟଙ୍କା ସଲାମିରେ କେନ୍ଦ୍ର ନିକଟରେ ଆଉ ୮ ଗୁଣ୍ଠ ହରକାସ୍ତ ଯାଗା ଲିଜ୍ ଦେଲେ । ଏହି ସ୍ଥାନରେ ପରେ ଛାତ୍ରୀ ନିବାସର କେତେକ ଗୃହ ନିର୍ମାଣ କରାଯାଇଛି । ଏହି ଘୋଷ ଦମ୍ପତି କଳା ବିକାଶ କେନ୍ଦ୍ରକୁ ବହୁ ଦିଗରେ ସାହାଯ୍ୟ କରୁଥିଲେ । ଶ୍ରୀ ଘୋଷ ଗଞ୍ଜାମର ଜିଲ୍ଲାପାଳ ଥିବାବେଳେ କେନ୍ଦ୍ରପାଣ୍ଠି ପାଇଁ ଗୋଟିଏ ସାହାଯ୍ୟ ରଜନୀର ମଧ୍ୟ ଆୟୋଜନ କରିଥିଲେ । କେନ୍ଦ୍ରର ତଳ ମହଲଗୃହ ନିର୍ମାଣ ଶେଷ ପରେ ଯେଉଁଦିନ ମୁଁ ଶପଥ ଭାଙ୍ଗିଲି ଓ ଜୋତା ପିନ୍ଧିବା ପାଇଁ ସିଦ୍ଧାନ୍ତ କଲି ସେହିଦିନ ଶ୍ରୀମତୀ ଘୋଷ କାଠର ସୁନ୍ଦର ଖଡ଼ମ ହଳେ ମୋତେ ଉପହାର ଦେଇ ପିନ୍ଧାଇଲେ । ତାହା ଆଜି ପର୍ଯ୍ୟନ୍ତ କେନ୍ଦ୍ରରେ ରହିଛି, ଏବଂ ଶ୍ରୀମତୀ ଶରତ କୁମାରୀ ମହାନ୍ତି (ବଡ଼ ଭାଇଙ୍କ ସ୍ତ୍ରୀ) ମୋତେ ହାତରେ ଖୁଆଇ ଦେଲେ, ଯାହା ଫଳରେ ସେହିଦିନଠାରୁ ମୋର ରାନ୍ଧି ଖାଦ୍ୟ ଆରମ୍ଭ କଲି ।

ପରେ ପରେ ଏ ଘୋଷ ଦମ୍ପତି କଲିକତା ଚାଲିଗଲେ ଏବଂ ନିକଟରେ ଶ୍ରୀମତୀ ଘୋଷ ଦେହତ୍ୟାଗ କରିଛନ୍ତି । ତାଙ୍କ ପରି ସଙ୍ଗୀତ ଶିଳ୍ପୀଙ୍କ ସ୍ମୃତି ଉପଲକ୍ଷେ କେନ୍ଦ୍ର ତରଫରୁ ଗୋଟିଏ ସ୍ଥାୟୀ ଶିଲ୍ଡ଼ର ବ୍ୟବସ୍ଥା କରାଯାଇଛି । ଏହି ରନିଂ ଶିଲ୍ଡ଼ ଗୋଟିଏ କପ୍ ସହ ପ୍ରତିବର୍ଷ ସଙ୍ଗୀତରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିବା କେନ୍ଦ୍ରର ଶିକ୍ଷାର୍ଥୀଙ୍କୁ ଦିଆଯିବା ପାଇଁ ଉଦ୍ଦିଷ୍ଟ ।

ଏହିପରି ଆଉ ଗୋଟିଏ ରନିଂ ଶିଲ୍ଡ଼ କେନ୍ଦ୍ରର ଜଣେ ପୁରାତନ ନୃତ୍ୟ ଶିଳ୍ପୀ ଶ୍ରୀମତୀ ପ୍ରତିମା (ଦାସ) ମିଶ୍ରଙ୍କର ହଠାତ୍ ମୃତ୍ୟୁ ପରେ ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ରଖାଯାଇଛି । ପ୍ରତିବର୍ଷ ନୃତ୍ୟ ବିଭାଗରେ କେନ୍ଦ୍ରର ଶ୍ରେଷ୍ଠ ଶିକ୍ଷାର୍ଥୀଙ୍କୁ ଏହା ଦିଆଯିବା ପାଇଁ ମଧ୍ୟ ଉଦ୍ଦିଷ୍ଟ ।

ଗୃହ ନିର୍ମାଣ ପାଣ୍ଠି ପାଇଁ ଆଉ କେତେକ ପଦକ୍ଷେପ ନିଆଗଲା । ବିନା ସୁଧରେ ପ୍ରତ୍ୟେକଙ୍କ ପାଖରୁ ଏକ ହଜାର ଟଙ୍କା ଲେଖାଏ ଧାର ସ୍ୱରୂପ ନେବାର ଯୋଜନା ଖୁବ୍ ସଫଳ ହେଲା । ପ୍ରାୟ ୭୫,୦୦୦ ଟଙ୍କା ଆମେ ଏ ଦିଗରେ ପାଇଛୁ । ଏହି ବନ୍ଧୁମାନେ ଯେ କି ବିନା ସୁଧାରେ ଧାର ଦେଲେ, ଏମାନେ କମ୍ ଧନ୍ୟବାଦର ପାତ୍ର ନୁହନ୍ତି ।

## ପ୍ରଥମ ଦଶନ୍ଧିର ଆଉ କେତେକ ସ୍ମୃତି—

ପୁଣି ଆପଣମାନଙ୍କୁ ମୁଁ କେନ୍ଦ୍ରର ପ୍ରାରମ୍ଭ ଅବସ୍ଥା ଅର୍ଥାତ୍ ୧୯୫୨-୫୩ ମସିହା ଆଡ଼କୁ ନେଇଯାଉଛି । ମୁଁ ଆଗରୁ କେଳୁବାବୁଙ୍କ କଥା କିଛି ଉଲ୍ଲେଖ କରିଛି । କେବଳ ମାସିକ ୨୦ ଟଙ୍କା ବେତନରେ ସେ କେନ୍ଦ୍ରରେ ଯୋଗ ଦେଇ-

ଥିଲେ । ତାଙ୍କ ପରି ଗୁରୁ ପାଇବାରେ କେନ୍ଦ୍ରର ଓଡ଼ିଶୀ ନୃତ୍ୟ ଶିକ୍ଷା କ୍ଷେତ୍ରରେ ଯଥେଷ୍ଟ ଉନ୍ନତି ଘଟିଲା । ତାଙ୍କର ଛାତ୍ର ଛାତ୍ରୀମାନେ ସାରା ଭାରତ ବର୍ଷରେ ନାମ ଅର୍ଜନ କରିବାକୁ ଲାଗିଲେ । ଦିଲ୍ଲୀରେ ଆୟୋଜିତ ବିଶ୍ୱ ବିଦ୍ୟାଳୟ ଛାତ୍ରଛାତ୍ରୀ ମାନଙ୍କର ପ୍ରତିଯୋଗିତାକୁ ମଧ୍ୟ କେନ୍ଦ୍ର ତରଫରୁ କେତେକ ଯୁବକଙ୍କୁ ଉତ୍ସାହିତ କରି ପଠାଯାଇଥିଲା । ଏପରି ଏକ ପ୍ରତିଯୋଗିତାରେ ଶ୍ରୀ ଧୀରେନ୍ଦ୍ର ନାଥ ପଟ୍ଟନାୟକ ଯୋଗ ଦେଇଥିଲେ । ମୋ ଘରେ କେଳୁବାବୁ ତାଙ୍କୁ ଦଶଅବତାର ନୃତ୍ୟ ଶିଖାଇଲେ ଏବଂ ଏ ପ୍ରତିଯୋଗିତାରେ ସେ ଉଚ୍ଚସ୍ଥାନ ଅଧିକାର କରିବାରୁ ପରେ ତାଙ୍କୁ ଭାରତ ସରକାରଙ୍କ ତରଫରୁ ଶିକ୍ଷାବୃତ୍ତି ମିଳିଥିଲା । ଆଜି ସେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀର ସହକାରୀ ସମ୍ପାଦକ ହିସାବରେ ଉଚ୍ଚ ସ୍ଥାନରେ ଅଛନ୍ତି । ପରେ ପରେ ଅବସ୍ଥା ଦେଖି କେଳୁବାବୁଙ୍କର ଦରମା ଆମେ ବଢ଼ାଇଲୁ । କିନ୍ତୁ ତାଙ୍କର ମୂଲ୍ୟ ଆମେ କେବେ ଦେଇ ପାରିଲୁ ନାହିଁ । ତାଙ୍କପରି ଏକନିଷ୍ଠ କର୍ମୀ ଏବଂ ବିଶିଷ୍ଟ ଓଡ଼ିଶୀ ନୃତ୍ୟଗୁରୁ ବହୁ ଅସୁବିଧା ଭିତରେ ମଧ୍ୟ ଅନୁଷ୍ଠାନର ସେବା କଲେ । ଅନେକ ପ୍ରଲୋଭନରୁ ଦୂରରେ ରହିଲେ । କେନ୍ଦ୍ରର ସୁଖ୍ୟାତି ଯୋଗୁ କେଳୁବାବୁଙ୍କର ଖ୍ୟାତି ବଢ଼ିଲା । କଳା ବିକାଶ କେନ୍ଦ୍ରର ଖ୍ୟାତି ମଧ୍ୟ କେଳୁବାବୁଙ୍କ ଯୋଗୁ ବି ଅନେକ ପରିମାଣରେ ବଢ଼ି ଚାଲିଲା । ଏହା ଗୋଟିଏ ନିର୍ଘଣ୍ଟ ସତ୍ୟ ଘଟଣା । ୧୯୬୫-୬୭ର ଗୃହ କଳହ ଯୋଗୁ କେଳୁବାବୁ ମଧ୍ୟ କେନ୍ଦ୍ର ଛାଡ଼ି ଚାଲିଗଲେ । ଅବଶ୍ୟ ପରେ ଆମ ଅନୁରୋଧ କ୍ରମେ ସେ କେନ୍ଦ୍ରରେ ଆଂଶିକ ଶିକ୍ଷକ ହିସାବରେ କାର୍ଯ୍ୟ କରୁଛନ୍ତି କିନ୍ତୁ ଆଗପରି ଆଉ ଉତ୍ସାହ ତାଙ୍କର ଆସୁ ନାହିଁ ।

ମୋର ସହପାଠୀ ଶ୍ରୀ ରାଖାଲ ଚନ୍ଦ୍ର ମହାନ୍ତିଙ୍କ ବିଷୟରେ ଉଲ୍ଲେଖ କରୁଛି । ସେ ମଧ୍ୟ କେବଳ ୨୦ ଟଙ୍କା ସାହାଯ୍ୟ ନେଇ କେନ୍ଦ୍ରରେ ବହୁଦିନ ଅଧ୍ୟୟନ କଲେ ଓ ଆଂଶିକ ଭାବରେ ଶିକ୍ଷକ ହିସାବରେ କାର୍ଯ୍ୟକଲେ । ସେ କେନ୍ଦ୍ର ଗୃହରେ ଅତି ଦୁରବସ୍ଥାରେ ସାଧନା କରୁଥିଲେ । ତାଙ୍କ ଭାଇ ଶ୍ରୀ ପ୍ରଫୁଲ୍ଲ କୁମାର ମହାନ୍ତିଙ୍କୁ କଟକରେ ଆଣି ପାଠ ପଢ଼ାଇଥିଲେ । କେନ୍ଦ୍ରର ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ଦିନରାତି ରିହରସାଲରେ ଯୋଗ ଦେଉଥିଲେ । ତାଙ୍କର କଟୁକଥା କହିବାରେ ଅଭ୍ୟାସ ଯୋଗୁ ସେ ଅନେକ ସମୟରେ ଅପ୍ରିୟ ହୋଇପଡ଼ନ୍ତି—କଥା କଥାକେ ନ ବୁଝି ବିରୋଧ କରିବା ମଧ୍ୟ ତାଙ୍କର ପ୍ରକୃତି । କିନ୍ତୁ ଅନୁଷ୍ଠାନ ପାଇଁ ସବୁବେଳେ ସେ ଜୀବନ ଦେବାପାଇଁ ପ୍ରସ୍ତୁତ । ବୟସ ଦୋଷ ଯୋଗୁ କେତେବେଳେ ସେ ଭୁଲ ବାଟରେ ଗଲାବେଳେ ମୁଁ ତାଙ୍କୁ ସତର୍କ କରେ । ତାଙ୍କର ସାଧନା ଓ ଅଧ୍ୟବସାୟ ଯୋଗୁ ସେ ଜଣେ ଉଚ୍ଚକୋଟୀର ସଙ୍ଗୀତ ଶିକ୍ଷକ ଭାବେ ସୁନାମ ଅର୍ଜନ କଲେ ଏବଂ ଏବେ ଦୁଇବର୍ଷ ହେଲା ସେ ଆକାଶବାଣୀର ସଙ୍ଗୀତ ନିର୍ଦ୍ଦେଶକ ହିସାବରେ କାର୍ଯ୍ୟ କରୁଛନ୍ତି ।

ପ୍ରଥମବସ୍ଥାରେ ଛାତ୍ରଛାତ୍ରୀମାନଙ୍କର ଶିକ୍ଷା ପ୍ରତି ଆଗ୍ରହ ଓ ଗୁରୁ ଓ ଗୁରୁଜନ-ମାନଙ୍କ ପ୍ରତି ଭକ୍ତି ଥିଲା । ତାହା ଦେଖିବାକୁ ଆଉ ମିଳୁ ନାହିଁ । କେବଳ ଛାତ୍ରଛାତ୍ରୀ ନୁହେଁ, ସେମାନଙ୍କର ଅଭିଭାବକମାନେ ମଧ୍ୟ କେନ୍ଦ୍ର ପ୍ରତି ଆକୃଷ୍ଟ ହୋଇ ଅନୁଷ୍ଠାନକୁ ଅନେକ ଦଗରେ ସାହାଯ୍ୟ କରୁଥିଲେ । କଟକ ବାହାରେ କଲିକତା ଓ ଅନ୍ୟାନ୍ୟ କୌଣସି ସ୍ଥାନରେ ନିମନ୍ତ୍ରଣ ପାଇଲେ ଅଭିଭାବକମାନେ ଖୁବ୍ ଆଗ୍ରହର ସହିତ ପିଲାମାନଙ୍କୁ ପଠାଉଥିଲେ । ଏପରି କି ସେମାନଙ୍କର ଯିବା ଆସିବା ଖର୍ଚ୍ଚ ମଧ୍ୟ ସେମାନେ ବହନ କରୁଥିଲେ । ଶିକ୍ଷକମାନେ ସ୍ୱେଚ୍ଛାରେ କୌଣସି ପାରଶ୍ରମିକ ନେଉ ନଥିଲେ । ସୁତରାଂ ସେତେବେଳେ କେବଳ ୩୦୦ ଟଙ୍କାରୁ ୫୦୦ ଟଙ୍କା ଭିତରେ ଏକ ସାଙ୍ଗରେ ଟାଟାନଗର, ଖଡ଼ଗପୁର ଓ କଲିକତା ପରି ସ୍ଥାନମାନଙ୍କରେ ତିରିଶ ଚାଳିଶ ଜଣ କଳାକାରଙ୍କୁ ନେଇ କାର୍ଯ୍ୟକ୍ରମ ପରିବେଷଣ କରିପାରୁଥିଲୁ । ସେଥିରେ ମଧ୍ୟ ୧୦୦ ଟଙ୍କା, ୨୦୦ ଟଙ୍କା କେନ୍ଦ୍ର ପାଣ୍ଠିକୁ ଆସୁଥିଲା ।

ଏହି କଳାକାରମାନଙ୍କ ମଧ୍ୟରେ ଅଧିକାଂଶ ଖୁବ୍ ଅଳ୍ପ ବୟସର ଝିଅ ପିଲା । ମନ ଅତି ନିର୍ମଳ ଓ ସରଳ । ଟିକିଏ ହେଲେ ବିକାର ନାହିଁ । ସେମାନଙ୍କର ଅଭିଭାବକମାନେ ଅତି ବିଶ୍ୱାସରେ ଆମ ଜିମାରେ ସେମାନଙ୍କୁ ଛାଡ଼ୁଥିଲେ ଏବଂ ସେମାନେ ମଧ୍ୟ ଆମ୍ଭମାନଙ୍କୁ ନିଜର ବାପ ମା' ପରି ଦେଖୁଥିଲେ । ଏମାନଙ୍କ ଭିତରୁ ପୁଣି ଅଧିକାଂଶ ଘର ଛାଡ଼ି କେବେ ବାହାରକୁ ଯାଇନଥିଲେ । ସୁତରାଂ ସେମାନଙ୍କର ସବୁ ସୁଖ ସୁବିଧା ନିଜର ପିଲାଭଳି ଆମେ ବୁଝୁଥିଲୁ । ସେତେବେଳେ ପାଉଁରୁଟୀ କିମ୍ବା ଫଳଫଳାଦିର ପ୍ରଚଳନ ନଥିଲା କିମ୍ବା ପ୍ରଚୁର ପରିମାଣରେ ମିଳୁନଥିଲା । ସୁତରାଂ ବାଟରେ ଖାଇବା ପାଇଁ ପିଲାମାନଙ୍କ ସକାଶେ ବାରମଜା, ଗୁଣ୍ଡିଆ ଓ ଚା' ସହିତ ମିଠା ବୁନ୍ଦି ନେଉଥିଲୁ ଏବଂ ସେମାନେ ଆଗ୍ରହର ସହିତ ହସି ହସି ଖାଉଥିଲେ ଓ ଘରକୁ ଫେରି ସେମାନଙ୍କ ଅଭିଭାବକମାନଙ୍କ ଆଗରେ ବାରମ୍ବାର ପ୍ରଶଂସା କରୁଥିଲେ । ଆଜିକାଲି ପାଉଁରୁଟି, ଅଣ୍ଡା, ମାଛ, ମାଂସ କି ଫଳଫଳାଦି ଯୋଗାଇ ଦେଇ ମଧ୍ୟ ପିଲାମାନଙ୍କୁ ସନ୍ତୁଷ୍ଟ କରିପାରୁ ନାହିଁ । ଗାଡ଼ିରେ ବସିବା ମାତ୍ରେ ସ୍ଥା' ଚା' ନଖାଇଲେ ନାଚ ପାରିବୁ ନାହିଁ ବୋଲି କହି ଉଠୁଛନ୍ତି । ଘରୁ ପଦାରେ ଗୋଡ଼ ଦେବାମାତ୍ରେ ଅସୁବିଧାରେ ସମ୍ମୁଖୀନ ହେବାକୁ ପଡ଼େ, ଏକଥା ସମସ୍ତେ ଜାଣିଲେ ସୁଦ୍ଧା ନିଜ ଘରଠାରୁ ବେଶି ସୁବିଧା ସେମାନେ ଖୋଜନ୍ତି ଏବଂ କୌଣସି ପ୍ରକାରେ ସନ୍ତୁଷ୍ଟ ହୁଅନ୍ତି ନାହିଁ ।

କଲିକତା C. L. T.ର ପ୍ରୋଗ୍ରାମ ବେଳେ କିମ୍ବା ଅନ୍ୟ କୌଣସି ଯାଗାକୁ ଗଲେ ଆମ୍ଭେମାନେ ଧର୍ମଶାଳା କିମ୍ବା ସେହିପରି ସ୍ଥାନରେ ରହୁଥିଲୁ । ପୁଣି ଗୋଟିଏ ଯୋଡ଼ିଏ କୋଠରୀରେ ପୁଅ ଝିଅ ମିଶି ଏକାଠି ରହିବାକୁ ପଡୁଥାଏ । ବାଳକୃଷ୍ଣବାବୁ ଓ କେଳୁବାବୁଙ୍କ ପରି ଶିକ୍ଷକ ଓ ଆମ୍ଭେମାନେ ମଧ୍ୟ ସେମାନଙ୍କ ସହିତ ରହୁଥିଲୁ ଏବଂ

ଏପରି ଅସୁବିଧାର ଭ୍ରୁକ୍ଷେପ ନକରି ବରଂ ଅତି ଆନନ୍ଦରେ ଦିନ କାଟୁଥିଲୁ । ସେତେବେଳେ ବଡ଼ ବଡ଼ ହୋଟେଲର ସୁବିଧା ନଥିଲା । ଆଜି ଏପରି ହୋଟେଲରେ ଏବଂ ଘରୋଇ ବଙ୍ଗଳାରେ ରହିଲେ ମଧ୍ୟ ଟିକିଏ ଅସୁବିଧା ହେଲେ ପିଲାମାନେ ନାକ ଟେକୁଛନ୍ତି । ସମସ୍ତ ବଦଳି ଯାଇଛି । କେବଳ ପିଲାଙ୍କ ଦୋଷ ଦେଲେ କ'ଣ ହେବ । ସେ ଯୁଗ ଆଉ ନାହିଁ କି ସେ ଆନନ୍ଦ ମଧ୍ୟ ନାହିଁ ।

ଥରେ ସେତେବେଳର ବଉଦ-ଫୁଲବାଣୀ ଜିଲ୍ଲାରେ ପ୍ରାୟ ୪୦ ଜଣ ପିଲାଙ୍କୁ ଧରି ଆମେ ଛତ୍ରାନୁଷ୍ଠାନ କାର୍ଯ୍ୟକ୍ରମ କରିବାକୁ ଯାଇଥିଲୁ । ସେତେବେଳେ ସେ ସବୁ ଗଡ଼ଜାତରେ ଯାନବାହାନର ସୁବିଧା ନଥିଲା କିମ୍ବା ରାସ୍ତା ମଧ୍ୟ ସୁବିଧାଜନକ ନଥିଲା । ପୁଣି ବଣ, ଜଙ୍ଗଲ ନଦୀ ନାଳରେ ପରିପୂର୍ଣ୍ଣ । କୌଣସି ମତେ ବସ୍‌ରେ ପହଞ୍ଚିଲୁ । ବାଟରେ ପଡ଼ିଲା ସୋନ ନଦୀ । ବସ୍ ଆଉ ତା ଭିତରେ ଯାଇପାରିବ ନାହିଁ । ସୁତରାଂ ସବୁ ପିଲାମାନେ ସେମାନଙ୍କର ନିଜର ବିଛଣାପତ୍ର ମୁଣ୍ଡରେ ବୋହି ଗ୍ଲଲେ । କେନ୍ଦ୍ରର ଆସବାବ ମଧ୍ୟ ବୋହି ନେବାରେ ସାହାଯ୍ୟ କଲେ । ମୋର ମନେ ପଡ଼ୁଛି ଆଗେ ଆଗେ କାଦମ୍ବିନୀ ବୋଲି ଗୋଟିଏ ଛାତ୍ରୀ ପୁଟୁଳି ଧରି ଚାଲୁଥାଏ । ବାଳକୃଷ୍ଣବାବୁ ମଧ୍ୟ ହେଡ୍‌ପରି ନଈ ବାଲିରେ ଚାଲିଚାଲି ପ୍ରାୟ ଏକ ମାଇଲ୍ ନଦୀ ପାରହେଲେ । ନଦୀ ଆର ପାରିରେ ଗୋଟିଏ ବଡ଼ ବରଗଛ ତଳେ ଆମେ ସମସ୍ତେ ଡେରା ପକାଇ ବସିଲୁ । ଧୀରେ ଧୀରେ ଆଖପାଖ ଗାଁର ଲୋକମାନେ ଆମ୍ଭମାନଙ୍କୁ ଦେଖିବାକୁ ଆସିଲେ । ଜଣେ ଦୁଇଜଣ ସ୍ତ୍ରୀଲୋକ ପଚାରିଲେ "କହୋ ବାବୁ କେଉଁଠୁ ଆସିଛ ?" ପୁଣି କାଦମ୍ବିନୀଙ୍କୁ ଓ ଅନ୍ୟ ପିଲାଙ୍କୁ ଲକ୍ଷ୍ୟ କରି କହିଲେ, "ମା, ଏ ଛୋଟ ବୟସରେ ତୁମେ ଯାତ୍ରା ଦଳରେ କାହିଁକି ମିଶିଛ ? ତୁମେ ମାସିକ କେତେ ଦରମା ପାଉଛ ?" ଏସବୁ କଥାରେ ସମସ୍ତେ ହସି ହସି ଜବାବ ଦେଲେ, କିନ୍ତୁ କାହାରି ମନରେ କିଛି ଗ୍ଲାନି ଆସିଲା ନାହିଁ । ଏ ଯୁଗ ମଧ୍ୟ ଆଉ ଆସିବ ନାହିଁ ।

ଅନେକ ପୂଜା, ପର୍ବ, ପର୍ବାଣି କେନ୍ଦ୍ରର ଛାତ୍ରଛାତ୍ରୀ, ଅଭିଭାବକ, କର୍ମକର୍ତ୍ତା ସମସ୍ତେ ଏକ ପରିବାର ପରି ମିଳିମିଶି ପାଳନ କରୁଥିଲେ । କାହାରି ଦେହପା ଭଲ ମନ୍ଦ ହେଲେ କିମ୍ବା କୌଣସି ଅସୁବିଧା ହେଲେ ସମସ୍ତେ ସମସ୍ତଙ୍କ ପ୍ରତି ସହାନୁଭୂତି ଦେଖାଉଥିଲେ । ବିବାହ ବ୍ରତୋତ୍ସବରେ ମଧ୍ୟ ଆପଣା ଆପଣା ଭିତରେ ସମସ୍ତେ ଯୋଗ ଦେଉଥିଲେ । ମୋର ମନେ ପଡ଼ୁଛି, କେତେକ ହୋଲି ଉତ୍ସବରେ ଆମେ ସମସ୍ତେ ମିଶି ପରସ୍ପର ଘରକୁ ଯାଉଥିଲୁ ଓ ହୋଲି ଖେଳୁଥିଲୁ । କାହାରି ମନରେ କିଛି ବିକାର ନଥିଲା । ଫଳରେ ସେ ତବେଳର ଏ ପାରିବାରିକ ସମ୍ପର୍କ ଆଜି ପର୍ଯ୍ୟନ୍ତ ରହିଛି ଏବଂ ସେତେବେଳର ଛାତ୍ରଛାତ୍ରୀ, ଅଭିଭାବକ ସମସ୍ତେ ଅନୁଷ୍ଠାନକୁ ଆଜି ଯାଏ ନିଜର ବୋଲି ଭାବୁଛନ୍ତି । ସେତେବେଳେ କେନ୍ଦ୍ରର ପରିଚାଳନା ଏତେ

ଶୃଙ୍ଖଳିତ ଓ ସୁଦୃଢ଼ ଥିଲା ଯେ କେନ୍ଦ୍ରର କୌଣସି ଛାତ୍ରଛାତ୍ରୀ କେନ୍ଦ୍ରର ବିନାନୁମତିରେ କେଉଁଠି ହେଲେ ନୃତ୍ୟଗୀତ ପରିବେଷଣ କରିପାରୁ ନଥିଲେ । କେନ୍ଦ୍ରର ଶିକ୍ଷକମାନେ ମଧ୍ୟ କେନ୍ଦ୍ରର ବିନାନୁମତିରେ କେନ୍ଦ୍ରର କମ୍ପା ବାହାରର କୌଣସି ପିଲାଙ୍କୁ ନେଇ ନୃତ୍ୟଗୀତ ପରିବେଷଣ କରୁନଥିଲେ । କେନ୍ଦ୍ରର ସାଧାରଣ ସମ୍ପାଦକ ହିସାବରେ ମୁଁ ଓ ଅଫିସ ସମ୍ପାଦକ ହିସାବରେ ଚନ୍ଦ୍ରବାବୁ (ସେତେବେଳର ଦାଢ଼ି ଦା) ଥିଲେ ଏବଂ ଏହିପରି ସୁଦୃଢ଼ ଶୃଙ୍ଖଳା ଯୋଗୁ ଆମକୁ ଅଧିକାଂଶ ହିଟଲର ବୋଲି କହୁଥିଲେ । କିନ୍ତୁ ଏପରି ଗଠନମୂଳକ ଅନୁଷ୍ଠାନ ଭିତରେ ମଧ୍ୟ ଶୃଙ୍ଖଳା ଏକାନ୍ତ ଆବଶ୍ୟକ ବୋଲି ଆମେ ମନେ କରୁଛୁ ।

ନୃତ୍ୟଗୀତର ଆଦର ବଢ଼ିବାରୁ ଶିକ୍ଷକମାନଙ୍କୁ ଅନେକ ସ୍ଥାନରୁ ଡାକରା ଆସିଲା । ସ୍ୱାଭେ ଅଭାବ ଅସୁବିଧା ବଢ଼ିଲା । ସେମାନଙ୍କ ସଂସାର ମଧ୍ୟ ବଢ଼ି ଚାଲିଲା । ସୁତରାଂ ଶିକ୍ଷକମାନେ ଆଉ ବେଶୀ ତ୍ୟାଗ ସ୍ୱୀକାର କରି ପାରିଲେ ନାହିଁ । ଛାତ୍ରଛାତ୍ରୀମାନଙ୍କର ମଧ୍ୟ ସେତେ ଉତ୍ସାହ ଆଉ ରହିଲା ନାହିଁ, ଏବଂ ଅନୁଷ୍ଠାନ ପ୍ରତି ଆନୁଗତ୍ୟ ଭାବ କ୍ରମଶଃ କମି ଆସିଲା । ଫଳରେ ସେତେବେଳର ୧୦୦ ଟଙ୍କା, ୨୦୦ ଟଙ୍କା ବଦଳରେ ଆଜି ପ୍ରତ୍ୟେକ କାର୍ଯ୍ୟକ୍ରମ ପାଇଁ ୧,୦୦୦ ଟଙ୍କା, ୨,୦୦୦ ଟଙ୍କା ମିଳିଲେ ମଧ୍ୟ କେନ୍ଦ୍ର ପାଣ୍ଠିକୁ କିଛି ଆସୁ ନାହିଁ ।

## ଓଡ଼ିଶୀ ନୃତ୍ୟ ସଙ୍ଗୀତ ବିକାଶରେ କେନ୍ଦ୍ରର ଅବଦାନ—

କଳା ବିକାଶ କେନ୍ଦ୍ର ଏକମାତ୍ର ଅନୁଷ୍ଠାନ ଯେ କି ପ୍ରଥମ କରି ଓଡ଼ିଶୀ ନୃତ୍ୟ ଓ ଗୀତର ବିଧିବଦ୍ଧ ଚାରିବର୍ଷିଆ ପାଠ୍ୟକ୍ରମ ପ୍ରସ୍ତୁତ କରିବାରେ ଅଗ୍ରଣୀ ହେଲା । ୧୯୫୩-୫୪ ଶିକ୍ଷା ବର୍ଷରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଏବଂ ଆମ କେନ୍ଦ୍ରର ଦୟାନିଧି ଦାସ, ନୀଳମାଧବ ବୋଷ ଓ ଶିକ୍ଷାଗୁରୁଙ୍କ ତତ୍ତ୍ୱାବଧାନରେ ଓଡ଼ିଶୀ ନୃତ୍ୟଗୀତର ଚାରିବର୍ଷିଆ ପାଠ୍ୟକ୍ରମଟି ପ୍ରବର୍ତ୍ତିତ କରାଗଲା । ବହୁ ବର୍ଷ ପରେ ସଙ୍ଗୀତ ନାଟକ ଏକାଡେମୀ ତରଫରୁ କେବଳ ଓଡ଼ିଶୀ ନୃତ୍ୟର ପାଠ୍ୟକ୍ରମ ପ୍ରସ୍ତୁତ କରାଯାଇଛି । ନାନା ଗବେଷଣା ପରେ ଆମର ପାଠ୍ୟକ୍ରମର ପରିବର୍ତ୍ତନ କରାଯାଇ ବର୍ତ୍ତମାନ ଆଠ ବର୍ଷର ଗୋଟିଏ ସୁଚିନ୍ତିତ ପାଠ୍ୟକ୍ରମ ପ୍ରବର୍ତ୍ତିତ କରାଯାଇଛି ।

ସେତେବେଳର ସଭାପତି ଡକ୍ଟର ପ୍ରାଣକୃଷ୍ଣ ପରିଜା ଓ ପରେ ଅନ୍ୟ କର୍ମକର୍ତ୍ତାମାନେ ବିଶ୍ୱବିଦ୍ୟାଳୟରେ ଓଡ଼ିଶୀ ନୃତ୍ୟଗୀତକୁ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ କରିବା ପାଇଁ ବହୁ ଚେଷ୍ଟାକଲେ । ରାଜ୍ୟର ଆଉ ଅନେକ ଶିକ୍ଷାବିତ୍‌ମାନେ ମଧ୍ୟ ଏଥିପାଇଁ ସୁପାରିଶ କଲେ, କିନ୍ତୁ ଦୁଃଖର କଥା, ଆଜି ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟମାନଙ୍କରେ ଓଡ଼ିଶୀ ନୃତ୍ୟ ଗୀତର ପାଠ୍ୟକ୍ରମ (faculty) ମଞ୍ଜୁର ହୋଇ ନାହିଁ ।

ପ୍ରଥମେ ଓଡ଼ିଶୀ ନୃତ୍ୟ ଖୁବ୍ ବେଶି ହେଲେ ଛଅରୁ ସାତ ମିନଟ୍ ପର୍ଯ୍ୟନ୍ତ ପ୍ରଦର୍ଶିତ ହେଉଥାଏ । ମୋର ମନେ ଅଛି ୧୯୬୩-୬୪ରେ କେନ୍ଦ୍ରର ଦ୍ୱିତୀୟ ବାର୍ଷିକ ଉତ୍ସବରେ ମନ୍ଦ୍ରାଜରୁ ଶ୍ରୀମତୀ ରୁକ୍ମିଣୀଦେବୀ ଅରୁଣ୍ଡେଲ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥିଲେ । ଡକ୍ଟର ପରିଜା ଥିଲେ ଅଧ୍ୟକ୍ଷ । ସେ ସମ୍ମିଳନୀ ନାଗ୍ରୀଜପ ସଦନରେ ଅନୁଷ୍ଠିତ ହୋଇଥିଲା ଏବଂ କେତେକ ପିଲା ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ । ଶ୍ରୀମତୀ ଅରୁଣ୍ଡେଲ ଏହାକୁ ବହୁ ଆଗ୍ରହର ସହିତ ଦେଖିବାର ଲକ୍ଷ୍ୟ କରାଗଲା କିନ୍ତୁ ଆମର ବନ୍ଧୁମାନଙ୍କ ଭିତରୁ କେତେକ ରଙ୍ଗମଞ୍ଚ ଉପରକୁ ମାଡ଼ି ଆସିଲେ ଓ ବେଶି ସମୟ ଧରି ଓଡ଼ିଶୀ ନୃତ୍ୟ କାହିଁକି କରାଯାଉଛି ବୋଲି ଯାଚିରୁଣ୍ଡ କରି ମଝିରୁ ବନ୍ଦ କରିଦେବା ପାଇଁ ପରାମର୍ଶ ଦେଲେ । ଗୋଟିଏ ତାଳ ଓ ବୋଲରେ ନାଚୁଛନ୍ତି, ସେମାନେ ବା ମଝିରୁ ବନ୍ଦ କରିବେ କିପରି ? ଏପରି ଅବସ୍ଥାରେ ସେହି ବନ୍ଧୁମାନେ ଏତେ ରାଗିଗଲେ ଯେ ସମ୍ମିଳନୀର ପରବର୍ତ୍ତୀ ଅବସ୍ଥାରେ କେନ୍ଦ୍ରକୁ ସାହାଯ୍ୟ କରିବାକୁ କୁଣ୍ଠାବୋଧ କଲେ । ପରବର୍ତ୍ତୀ କାର୍ଯ୍ୟକାରୀ କମିଟି ବୈଠକରେ ପରିଜା ସାହେବ ଦୁଃଖ ପ୍ରକାଶ କରି କହିଲେ, "ଏତେ ଛୋଟ ପିଲାଙ୍କୁ ଏତେ ସମୟଧରି ନଚାଇଲେ ସେମାନଙ୍କର ସ୍ୱାସ୍ଥ୍ୟହାନି ଘଟିବ ।"

ଏହିପରି ଆଉ ଗୋଟିଏ ଦୃଷ୍ଟାନ୍ତ ଦେଉଛି । କେନ୍ଦ୍ରର ଚତୁର୍ଥ ବାର୍ଷିକ ଉତ୍ସବ ନାଗ୍ରୀଜପ ସଦନରେ ହେଉଥାଏ । ଶ୍ରୀ ରାଧାନାଥ ବାବୁ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥାଆନ୍ତି । କବି ଉପେନ୍ଦ୍ରଭଞ୍ଜଙ୍କ କାବ୍ୟର ଗୋଟିଏ ଓଡ଼ିଶୀ ନୃତ୍ୟ ଅଭିନୟ ହେଉଥାଏ । ସେତେବେଳେ ତ ବଡ଼ ପିଲା ନଥିଲେ । ସମସ୍ତେ ପ୍ରାୟ ୧୦ ବର୍ଷରୁ କମ୍ । ସୁତରାଂ ବିଶ୍ରାମ ସମୟରେ ମୋତେ ବାହାରକୁ ଡାକି ଆଣି ସେ କହିଲେ ଯେ "ଛୋଟ ଛୋଟ ପିଲାମାନଙ୍କୁ ଏପରି ଶୃଙ୍ଗାର ରସ ପୂର୍ଣ୍ଣ ନୃତ୍ୟ ଶିଖାଉଛ କାହିଁକି ? ଛୋଟ ଛୋଟ ପିଲାଙ୍କୁ ବାଦ ଦେଇ କେବଳ ବଡ଼ ପିଲାଏ ଏହାକୁ କରନ୍ତୁ ।" ବଡ଼ ପିଲା କାହାନ୍ତି ? ସେତେବେଳେ ହଠାତ୍ ଏ କାର୍ଯ୍ୟକ୍ରମ ପରିବର୍ତ୍ତନ ହେବ କିପରି ? ସୁତରାଂ ବିଶ୍ରାମ ପରେ କାର୍ଯ୍ୟକ୍ରମରେ ମୁଁ ଲୁଚି ରହିଲି ।

ଏହି ଓଡ଼ିଶୀ ନୃତ୍ୟ ପୁଣି ଆଜି ବିଭିନ୍ନ ଅଙ୍ଗଭଙ୍ଗୀରେ ଦେଢ଼ ଘଣ୍ଟା ଏପରିକି ଦୁଇ ଘଣ୍ଟା ମଧ୍ୟ ପରିବେଷଣ କରାଯାଉଛି ଏବଂ ପିଲାମାନଙ୍କର ସ୍ୱାସ୍ଥ୍ୟ କିଛି ଖରାପ ହେଉ ନାହିଁ । କେବଳ ଓଡ଼ିଶୀ ନୁହେଁ, ଭରତନାଟ୍ୟମ୍, କଥକ ଆଦି ନୃତ୍ୟ ବହୁ ସମୟ ଧରି ନଚା ଯିବାର ବିଧିବିଧାନ ଅଛି । କିନ୍ତୁ ସେତେବେଳେ ଓଡ଼ିଶୀ ନୃତ୍ୟକୁ ଅନ୍ୟ କୌଣସି ନୃତ୍ୟ ବିଶେଷ ଭାବେ ଭଦ୍ର ପରିବାର ଦେଖୁ ନଥିଲେ ବୋଲି ଲୋକେ ଏପରି ଭାବୁଥିଲେ ।

# ଓଡ଼ିଶୀ—ଏକ ଶାସ୍ତ୍ରୀୟ ନୃତ୍ୟ—

ଓଡ଼ିଶୀ ଗୋଟିଏ ଶାସ୍ତ୍ରସିଦ୍ଧ ପୁରାତନ ନୃତ୍ୟ ହେଲେ ମଧ୍ୟ କେତେକ କାରଣରୁ ସରକାରଙ୍କ ସ୍ୱୀକୃତି ପାଇନଥିଲା । ଶ୍ରୀ ଜଗନ୍ନାଥ ମନ୍ଦିରରେ ମାହାରୀମାନେ ଓଡ଼ିଶୀ ନୃତ୍ୟ ପରିବେଷଣ କରୁଥିଲେ । ପରେ ପରେ ଆଖଡ଼ାମାନଙ୍କରେ ପୁଅପିଲାଙ୍କ ଦ୍ୱାରା ଗୋଟିପୁଅ ନୃତ୍ୟ ପ୍ରବର୍ତ୍ତିତ ହେଲା । ମୋହନ ଗୋସ୍ୱାମୀଙ୍କର ରାହାସ ଦଳରେ ମଧ୍ୟ ଓଡ଼ିଶୀ ନୃତ୍ୟର ସମାବେଶ ଥିଲା । କିନ୍ତୁ ଏହି ଓଡ଼ିଶୀ ନୃତ୍ୟକୁ ଭଦ୍ର ପରିବାର-ବର୍ଗ ମଧ୍ୟରେ ପରିଚିତ କରାଇଲା କେବଳ କଳା ବିକାଶ କେନ୍ଦ୍ର ।

ଆମ ପୁରାତନ ଭରତ ନାଟ୍ୟ ଶାସ୍ତ୍ରରେ ଓଡ଼ିଶୀ ନୃତ୍ୟର ଉଲ୍ଲେଖ ଅଛି । ସେତେବେଳେ ଏହାକୁ 'ଉଡ୍ର ନୃତ୍ୟ' କୁହାଯାଉଥିଲା ଏବଂ ପୂର୍ବରୁ ଶାସ୍ତ୍ରୀୟ ନୃତ୍ୟ ହେଲେ ବି ମଣିପୁରୀ, କଥକ, କଥାକଳି, ଭରତନାଟ୍ୟମ୍ ପରି ବର୍ତ୍ତମାନର ଶାସ୍ତ୍ରୀୟ ନୃତ୍ୟ ହିସାବରେ ଏହାର ଗଣନା ନଥିଲା । ଏହି ନୃତ୍ୟକୁ ଶାସ୍ତ୍ରସିଦ୍ଧ ସର୍ବଭାରତୀ ସମ୍ମତ କରାଇବା ପାଇଁ ୧୯୫୭ରୁ ୧୯୫୮ ପର୍ଯ୍ୟନ୍ତ କଳା ବିକାଶ କେନ୍ଦ୍ର ଆପ୍ରାଣ ଚେଷ୍ଟାକଲା । କଟକରେ ଆୟୋଜିତ **All India Music Conference**, ପୁରୀରେ ଏକାଡେ଼ମୀ ଆୟୋଜିତ **All India Dance Seminar**ରେ କେନ୍ଦ୍ର ଦ୍ୱାରା ଓଡ଼ିଶୀ ନୃତ୍ୟ, ନୃତ୍ୟନାଟିକା ପରିବେଷଣ କରାଗଲା । ପୁରୀରେ ଶ୍ରୀ କବିଚନ୍ଦ୍ରଙ୍କ ଲିଖିତ 'ପଞ୍ଚପୁଷ୍ପ' ନୃତ୍ୟନାଟିକା ଦର୍ଶକମାନଙ୍କୁ ଏତେ ମୁଗ୍ଧ କଲା ଯେ ସେତେବେଳେ ଓଡ଼ିଶୀ ନୃତ୍ୟକୁ ବାହାରୁ ଆସୁଥିବା ପଣ୍ଡିତମାନେ ମନେ ମନେ ଶାସ୍ତ୍ରୀୟ ବୋଲି ମାନିଲେ । ସେତେବେଳର ବିଶ୍ୱସୁନ୍ଦରୀ ଶ୍ରୀମତୀ ଇନ୍ଦ୍ରାଣୀ ରେହେମାନ ଯେ କି ଏହା ଆଗରୁ ଦିଲ୍ଲୀରେ ଆନ୍ତଃ ବିଶ୍ୱବିଦ୍ୟାଳୟ ଯୁବ ମେଳାରେ ଶ୍ରୀମତୀ ପ୍ରିୟମ୍ବଦା ମହାନ୍ତିଙ୍କ ଓଡ଼ିଶୀ ନୃତ୍ୟ ଦେଖି ଆକୃଷ୍ଟ ହୋଇଥିଲେ, ସେ ମଧ୍ୟ ଏ **seminar** ରେ ଉପସ୍ଥିତ ଥିଲେ । ପରେ ସେ ଗୁରୁ ଦେବପ୍ରସାଦଙ୍କ ଜରିଆରେ ଓଡ଼ିଶୀ ନୃତ୍ୟର ବିଧିବଦ୍ଧ ଶିକ୍ଷା ଲାଭକଲେ । ଏହିପରି ବାହାରର କେତେକ କଳାକାର ଓ **Dr Charles Fabri**ଙ୍କ ପରି ନୃତ୍ୟ ବିବେଚକଙ୍କ ଦ୍ୱାରା ଓଡ଼ିଶୀ ନୃତ୍ୟ ପ୍ରସିଦ୍ଧି ଲାଭକଲା । ୧୯୫୭ର ଶେଷ ଭାଗରେ ଦିଲ୍ଲୀ ଏକାଡେ଼ମୀ ଦ୍ୱାରା ଆୟୋଜିତ **Dance Seminar**ରେ ଆମେ କୁମାରୀ ଜୟନ୍ତୀଙ୍କୁ ନେଇ ହାଜର ହେଲୁ । କବିଚନ୍ଦ୍ର ଓଡ଼ିଶୀ ଉପରେ ଏକ ପ୍ରବନ୍ଧ ପାଠକଲେ ଏବଂ ଜୟନ୍ତୀ ଓଡ଼ିଶୀ ନୃତ୍ୟ ପରିବେଷଣ କଲେ । ଗୁରୁ ଦେବପ୍ରସାଦ ଓ କେଳୁଚରଣ ମଧ୍ୟ ଓଡ଼ିଶୀର ବିଭିନ୍ନ ଭଙ୍ଗୀ ପ୍ରଦର୍ଶନ କରି ତାହାର ବିଶେଷତ୍ୱ ବୁଝାଇଲେ । ସେତେବେଳେ ଏକ ସ୍ୱରରେ ସମସ୍ତେ ଏହାକୁ ଶାସ୍ତ୍ରୀୟ ନୃତ୍ୟ ବୋଲି ସ୍ୱୀକାର କଲେ ମଧ୍ୟ କାଳେ କଳା ବିକାଶ କେନ୍ଦ୍ର ଏହାର **credit** ନେଇଯିବ ବୋଲି ସେତେବେଳର ଦିଲ୍ଲୀରେ ରହୁଥିବା

ଆମ ଓଡ଼ିଶାର ଜଣେ ଦୁଇଜଣ ଉଚ୍ଚପଦସ୍ଥ ଅଧିକାରୀ ଏହାକୁ ଚପାଇ ଦେବାକୁ ଚେଷ୍ଟାକଲେ । ଆମେ କିନ୍ତୁ 'ନ ସ୍ପେନ୍ଦ୍ ବନ୍ଧା' । ପଛେ ପଛେ ଲଗି ରହିଲୁ । ପୁଣି କାଲିଚରଣଙ୍କୁ ଧରି ମୁଁ ମାଡ୍ରାଜ ମିଉଜିକ୍ ଏକାଡ଼େମୀ ଆନୁକୂଲ୍ୟରେ ଆୟୋଜିତ ଏକ ଆଲୋଚନା ଚକ୍ରରେ ମାଡ୍ରାଜ ପହଞ୍ଚିଲୁ । ସଙ୍ଗରେ ଥିଲେ ସଙ୍ଗୀତଜ୍ଞ ଶ୍ରୀ ବାଳକୃଷ୍ଣ ଦାଶ ଓ ଶ୍ରୀମତୀ ଅଙ୍ଗୁରବାଳା ରାୟ । ନୃତ୍ୟ ପରିବେଷଣ କଲେ କୁମାରୀ ସଂଯୁକ୍ତା । ପ୍ରଥମେ ସେଠାରେ ମଧ୍ୟ ଏହା ଭରତନାଟ୍ୟମ୍ର ଅଙ୍ଗ ବୋଲି କହୁଥିଲେ, କିନ୍ତୁ ପରେ ଏହାକୁ ଏକ ସ୍ଵତନ୍ତ୍ର ଶାସ୍ତ୍ରୀୟ ନୃତ୍ୟ ବୋଲି ମାନିବାକୁ ବାଧ ହେଲେ । ୧୯୭୨ ମସିହାରେ ଆମର ଦକ୍ଷିଣ ଭାରତ ଗସ୍ତ ସମୟରେ ମଧ୍ୟ ଅନୁଭବ କଲୁ ଯେ ଆଜିଯାଏ ଓଡ଼ିଶୀ ନୃତ୍ୟ ଗୋଟିଏ ଭରତନାଟ୍ୟମ୍ କିମ୍ବା କୁଚିପୁଡ଼ିର ଅଙ୍ଗବୋଲି ସେଠାକାର ଲୋକଙ୍କର ଧାରଣା ରହିଛି । ଆମର ଏହି ଶେଷ ଅଭିଯାନରେ ଆମେ ସଫଳ ହୋଇଛୁବୋଲି ଭାବିଛୁ ଏବଂ ଆଜି ଦାକ୍ଷିଣାତ୍ୟ ରାଜ୍ୟରେ ଓଡ଼ିଶୀ ନୃତ୍ୟ ଏକ ସ୍ଵତନ୍ତ୍ର ଶାସ୍ତ୍ରୀୟ ନୃତ୍ୟ ବୋଲି ସେମାନେ ମାନିଲେଣି ।

୧୯୫୮ର ସେହି ମାଡ୍ରାଜ ଅଭିଯାନର କେତେ ଦିନ ପରେ ପୁଣି କଲିକତା ଗଲୁ । ସେଠାର ନୃତ୍ୟ ଭାରତୀ ଆନୁକୂଲ୍ୟରେ ଆୟୋଜିତ ଗୋଟିଏ ଅଖିଳ ଭାରତୀୟ ନୃତ୍ୟ ସମ୍ମିଳନୀରେ ଯୋଗଦେଲୁ । କଳାକାର ଥିଲେ କୁଙ୍କୁମ ଦାସ ଓ କୃଷ୍ଣପ୍ରିୟା ନନ୍ଦ ।

ପରେ ପରେ ବମ୍ବେର 'ସୁର ସିଙ୍ଗାର ସଂସଦ ଦ୍ଵାରା ଆୟୋଜିତ ସଙ୍ଗୀତ ସମ୍ମିଳନୀରେ ମଧ୍ୟ ଆମର କଳାକାର ପହଞ୍ଚିଲେ । ଏହିପରି ଭାରତ ବର୍ଷର ପ୍ରଧାନ ସହରମାନଙ୍କରେ ଓଡ଼ିଶୀ ନୃତ୍ୟର ବିଜୟ ବାନା ଉଡ଼ିଲା । ଆହୁରି କେତେକ ବାହାରର ନୃତ୍ୟ କଳାକାର ଶ୍ରୀମତୀ ଯାମିନୀ କୃଷ୍ଣମୂର୍ତ୍ତି ଓ ପରେ ପରେ ଓଡ଼ିଶାକୁ ବୋହୂ ହୋଇ ଆସିଥିବା ଶ୍ରୀମତୀ ସୋନାଲ ମାନସିଂହ ପ୍ରଭୃତି ଓଡ଼ିଶୀ ନୃତ୍ୟରେ ପାରଙ୍ଗମ ହୋଇ ଏହାକୁ ଦେଶବିଦେଶରେ ପ୍ରଦର୍ଶନ କଲେ । ଫଳରେ ବର୍ତ୍ତମାନର ଦିଲ୍ଲୀ ଏକାଡ଼େମୀର ସମ୍ପାଦକ କିନ୍ତୁ ସେତେବେଳର ବରୋଦା ବିଶ୍ଵ ବିଦ୍ୟାଳୟର ନୃତ୍ୟ ଅଧ୍ୟକ୍ଷ ଶ୍ରୀ ମୋହନ ଖୋକର, ବମ୍ବେର ଶ୍ରୀ ସୁନୀଲ କୋଠାରୀ, ଦିଲ୍ଲୀର ଶ୍ରୀ ଚାର୍ଲସ ଫାବ୍ରି, ମାଡ୍ରାଜର ଡକ୍ଟର ଭି. ରାଘବନଙ୍କ ପରି ବିଶିଷ୍ଟ ନୃତ୍ୟ ବିବେଚକ ଓଡ଼ିଶାରେ ଆସି ପହଞ୍ଚିଲେ । କେନ୍ଦ୍ରର ସାହାଯ୍ୟରେ ଶ୍ରୀ ମୋହନ ଖୋକର ଓଡ଼ିଶୀ ନୃତ୍ୟ ସଂପର୍କରେ ବିଶଦ ଗବେଷଣା କଲେ । ସେହିପରି ଶ୍ରୀ ସୁନୀଲ କୋଠାରୀ ମଧ୍ୟ କଟକ ଆସି ମାସ ମାସ ଧରି କେନ୍ଦ୍ର ସାହାଯ୍ୟରେ ଓଡ଼ିଶୀ ନୃତ୍ୟର ଗବେଷଣା କଲେ । ସେତେବେଳର ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ମଧ୍ୟ ଏପରି ଗବେଷକମାନଙ୍କୁ ପ୍ରୋତ୍ସାହନ ଦେଉଥିଲେ ।

ବିଦେଶର ବହୁ କଳାକାର ଓ ଆମ ଦେଶର ଅନ୍ୟ ନୃତ୍ୟର ବହୁ କଳାକାର ଏହି ଓଡ଼ିଶୀ ନୃତ୍ୟ ଶିଖିବା ପାଇଁ ଆଗ୍ରହୀ ହେଲେ । ଫଳରେ ଆମ କେନ୍ଦ୍ର ତରଫରୁ ଓଡ଼ିଶୀ ନୃତ୍ୟର ଶିକ୍ଷା ପାଇଁ ଗୋଟିଏ ଦୁଇ ମାସିକ ଗ୍ରୀଷ୍ମ ଶିକ୍ଷା ଶିବିରର ବ୍ୟବସ୍ଥା ହେଲା । ଏହି ଶିବିର ପାଇଁ ପରେ ଗୋଟିଏ ଚାରିବର୍ଷିଆ ସ୍ୱତନ୍ତ୍ର ପାଠ୍ୟକ୍ରମ ପ୍ରସ୍ତୁତ କରାଗଲା । ପ୍ରତ୍ୟେକ ଶିକ୍ଷାର୍ଥୀ ବର୍ଷକୁ ତିନିମାସ କରି ଚାରି ବର୍ଷରେ ଏହି ପାଠ୍ୟକ୍ରମ ଶେଷ କରିପାରିବେ । ଏଥିରେ ଜାପାନ, ଆମେରିକା ଆର୍ଜେଣ୍ଟାଇନା, ସିଙ୍ଗାପୁର, ଶ୍ରୀଲଙ୍କା ପରି ଅନେକ ଦେଶବିଦେଶର ନୃତ୍ୟ କଳାକାର ଓ ଶିକ୍ଷକ ଶ୍ରେଣୀୟ ଲୋକ ଯୋଗଦେଲେ । ଦିଲ୍ଲୀ, ମହାରାଷ୍ଟ୍ର, ଗୁଜରାଟ, ମଧ୍ୟପ୍ରଦେଶର ବହୁ କଳାକାର ମଧ୍ୟ ଆସିଲେ । କଟକ ବାହାରୁ ଆମ ରାଜ୍ୟର ଅନ୍ୟ ସହର ଓ ସ୍ଥାନମାନଙ୍କରୁ ଶିକ୍ଷକମାନେ ଆସୁଥାଆନ୍ତି । ଏପରିକି ଭୁବନେଶ୍ୱର ସଙ୍ଗୀତ ମହାବିଦ୍ୟାଳୟର ଶିକ୍ଷାର୍ଥୀ ହୋଇ ମଧ୍ୟ ସେମାନେ ଏହି ଶିବିରର ସୁଯୋଗ ନେଇଛନ୍ତି ଏବଂ ଏହି ତିନିମାସ ଛଡ଼ା ଶେଷ ନଅ-ମାସ ନିଜ ନିଜର କାର୍ଯ୍ୟ କ୍ଷେତ୍ରରେ ଶିକ୍ଷା ଦେବାର ସୁଯୋଗ ପାଆନ୍ତି । ବହୁ କଳାକାର ଏହାର ସୁଯୋଗ ନେଲେ ଏବଂ ଏହିପରି ଦେଶବିଦେଶରେ ଓଡ଼ିଶୀ ନୃତ୍ୟର ଶିକ୍ଷା କେନ୍ଦ୍ର ପ୍ରସାର ପାଇବାରେ ଲାଗିଲା । ବମ୍ବେ, କଲିକତା, ଦିଲ୍ଲୀ ପ୍ରଭୃତି ସହର ମାନଙ୍କରେ ମଧ୍ୟ ଏହିପରି ଶିକ୍ଷା ପ୍ରାପ୍ତ ଶିକ୍ଷକମାନେ ଓଡ଼ିଶୀ ନୃତ୍ୟ ଶିକ୍ଷା ଦେଉଛନ୍ତି । ଏହାକୁ ମଧ୍ୟ ବିକୃତ ରୂପ ଦିଆଗଲା ଏବଂ କେତେକ ଉଚ୍ଚପଦସ୍ଥ କର୍ମଚାରୀମାନେ ଏହାର ବିରୋଧ କରିବାକୁ ଲାଗିଲେ । ଏଥିପାଇଁ ଦିଲ୍ଲୀ ଏକାଡ଼େମୀରୁ ମିଳୁଥିବା ସାହାଯ୍ୟ ବନ୍ଦ ହୋଇଗଲା । ଓଡ଼ିଶାର ଭଦ୍ର ପରିବାରର ଝିଅମାନେ ଓଡ଼ିଶା ବାହାରେ ନୃତ୍ୟ ଶିଖିବାକୁ ଯିବେ କିମ୍ବା ଏହି ନୃତ୍ୟ ଦଳରେ ଯୋଗଦେବେ ବୋଲି କେହି କେବେ ଭାବି ନଥିବେ । କଳା ବିକାଶ କେନ୍ଦ୍ର ଏହାର ଅଗ୍ରଣୀ ହେଲା ଏବଂ ଦିଲ୍ଲୀର ଗୋଟିଏ ବିଶିଷ୍ଟ ନୃତ୍ୟ ଦଳରେ ଯୋଗ - ଦେବାପାଇଁ କେତେକ ଶିକ୍ଷାର୍ଥୀଙ୍କୁ ପଠାଇଲା । ସେ ସମୟର ଜୟନ୍ତୀ ଘୋଷ ହେଉଛନ୍ତି ଏମାନଙ୍କ ମଧ୍ୟରେ ଅନ୍ୟତମ । ଆମର ସେତେବେଳର ଶିକ୍ଷକ ମାୟାଧର ବାବୁ ମଧ୍ୟ ଏହି ଦଳରେ ଯୋଗ ଦେଇଥିଲେ ।

ଦୁଃଖର ସହିତ ସ୍ୱୀକାର କରିବାକୁ ପଡ଼ୁଛି ଯେ ଓଡ଼ିଶୀ ନୃତ୍ୟ ପରି ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ସଙ୍ଗୀତ କରାଇବା ପାଇଁ କେନ୍ଦ୍ର ଚେଷ୍ଟା କରି ଆଜିଯାଏ ସଫଳ-କାମୀ ହୋଇପାରିନାହିଁ । କେନ୍ଦ୍ର ପ୍ରାରମ୍ଭରୁ ପ୍ରଥମ ଦୁଇବର୍ଷ ପର୍ଯ୍ୟନ୍ତ ଶ୍ରୀ ବିଶ୍ୱନାଥ ରାଓ ଅବୈତନିକ ଭାବରେ ଲଘୁ ସଙ୍ଗୀତ, ରବୀନ୍ଦ୍ର ସଙ୍ଗୀତ ଇତ୍ୟାଦି ଶିଖାଉଥିଲେ । ତାଙ୍କର ପରାମର୍ଶରେ ପ୍ରଥମ କରି ଅଳ୍ପ ଦରମାରେ ଶ୍ରୀ ବାଲକୃଷ୍ଣ ଦାଶଙ୍କୁ କେନ୍ଦ୍ରକୁ ଅଣାଗଲା । ପରେ ଯେତେବେଳେ ବାଲକୃଷ୍ଣବାବୁଙ୍କୁ ରେଡ଼ିଓ ଛାଡ଼ିବାକୁ ପଡ଼ିଲା ଏବଂ ସେ ଯେତେବେଳେ କଟକ ଛାଡ଼ି ଚାଲିଯିବା ପାଇଁ ସଙ୍କଳ୍ପ କଲେ ସେତେବେଳେ

ଆମ୍ଭମାନେ ତାଙ୍କୁ ବୁଝାବୁଝି କରାଇ ଅଧିକ ଦରମାରେ କେନ୍ଦ୍ରରେ ରଖିଲୁ । ସେତେବେଳର ଅଧିକ ଦରମା ଅର୍ଥ ମାସିକ ୧୦୦ ଟଙ୍କା । ଅନ୍ୟ ସମସ୍ତ ଶିକ୍ଷକ ୧୦୦ ଟଙ୍କାରୁ କମ୍ ପାଉଥିଲେ । ସେତେବେଳେ ନୃତ୍ୟଗୀତର ବେଶି ଆଦର ନଥିବାରୁ, ସେଥିର ପ୍ରସାର ପାଇଁ ଏବଂ ଦରଦାମ ପରିସ୍ଥିତି ସୁବିଧାଜନକ ଥିବାରୁ ଏତିକି ଟଙ୍କାରେ ମଧ୍ୟ ସେମାନେ ଭଲରେ ଚଳିଯାଉଥିଲେ । କେତେକ ପରିମାଣରେ ତ୍ୟାଗ ସ୍ୱୀକାର କରିବାର ମନୋବୃତ୍ତି ମଧ୍ୟ ରହିଥିଲା ।

ଓଡ଼ିଶୀ ନୃତ୍ୟ ପରି ସଙ୍ଗୀତର ମଧ୍ୟ ପ୍ରଥମ କରି କେନ୍ଦ୍ର ତରଫରୁ ଚାରିବର୍ଷିଆ ପାଠ୍ୟକ୍ରମ ତିଆରି ହୋଇଥିଲା । ଆଜିର ନାମଜାଦା କଳାକାର ଶ୍ରୀ ରାଖାଲ ଚନ୍ଦ୍ର ମହାନ୍ତି, ଶ୍ରୀ ଭିକାରି ଚରଣ ବଳ, ଶ୍ରୀ ଅର୍ଜୁନ ଚରଣ ସାମଲ, ଶ୍ରୀ ରଘୁନାଥ ନନ୍ଦ, ଶ୍ରୀ ଅକ୍ଷୟ କୁମାର ମହାନ୍ତି, ଡକ୍ଟର ମନୋରଞ୍ଜନ ପ୍ରଧାନ, ଶ୍ରୀ ନବୀନଚନ୍ଦ୍ର ପଟ୍ଟନାୟକ, କୁମାରୀ ଇନ୍ଦିରା ରାୟ, ବିଷ୍ଣୁପ୍ରିୟା, ଶେଫାଳୀ ପ୍ରଭୃତି ବହୁ ଛାତ୍ରଛାତ୍ରୀ ସେ ସମୟର କେନ୍ଦ୍ରର ଅବଦାନ । ସେମାନଙ୍କ ମଧ୍ୟରୁ ଅନେକେ ଶିକ୍ଷକ ହେଲେ ଏବଂ ସେମାନଙ୍କର ବହୁ ଛାତ୍ରଛାତ୍ରୀ ମଧ୍ୟ ଆଜି ଆକାଶବାଣୀ ଓ ଚଳଚ୍ଚିତ୍ରର କଳାକାର । ସେମାନଙ୍କ ମଧ୍ୟରେ ନୀରଜ ନଳିନୀ, ଗୀତା, ତୃପ୍ତି, ଶୁକ୍ଳା, ପ୍ରତିମା, ପୂର୍ଣ୍ଣିମା ପ୍ରଭୃତି ଅଛନ୍ତି ।

ଏହିପରି କେନ୍ଦ୍ର ପ୍ରାରମ୍ଭର ପାଞ୍ଚ ବର୍ଷ ଭିତରେ ସିତାରରେ ସ୍ୱର୍ଗତ ମଧୁ ବୋଷ, ତବଲାରେ ଶ୍ରୀ ରାଧାଗୋବିନ୍ଦ ଘୋଷ, ଶ୍ରୀ ଅଭିମନ୍ୟୁ ନାୟକ, ଶ୍ରୀ ରଘୁନାଥ ଦାସ ଏହିପରି ଷୋଳ ଜଣ ଶିକ୍ଷକ ଭିନ୍ନ ଭିନ୍ନ ବିଭାଗରେ ଯୋଗଦେଲେ । କେନ୍ଦ୍ର ପ୍ରଚେଷ୍ଟାରେ ଶ୍ରୀ ମାୟାଧର ରାଉତଙ୍କୁ ମାନ୍ଦ୍ରାଜ ଆଡ଼୍ୟାରର କଳା କ୍ଷେତ୍ରକୁ ଓ ଶ୍ରୀ ନବଘନ ମିଶ୍ରଙ୍କୁ ଲକ୍ଷ୍ନୌ ମରିସ୍ କଲେଜକୁ ଯଥାକ୍ରମେ ନୃତ୍ୟ ଓ ବେହେଲାରେ ଉଚ୍ଚ ଶିକ୍ଷା ପାଇଁ ପଠାଗଲା । ଶ୍ରୀ ନବଘନ ବାବୁଙ୍କ ବଦଳରେ ସେତେବେଳେ ଯାଜପୁରରୁ ନୂଆହୋଇ ଆସିଥିବା ଜଣେ ଉଦୀୟମାନ ବେହେଲା ଶିକ୍ଷକ ଶ୍ରୀ ସୁନାକର ସାହୁ ଯୋଗଦେଲେ । ସେ ଆଜି ଆକାଶବାଣୀର ଜଣେ ଶ୍ରେଷ୍ଠ କଳାକାର । ସେଠାରେ ସେମାନଙ୍କର ସବୁ ସୁବିଧା ଅସୁବିଧା କେନ୍ଦ୍ର ଓ ବ୍ୟକ୍ତିଗତ ଭାବରେ ମୁଁ ବୁଝୁଥିଲି । ସେହି ସମୟରେ ଶ୍ରୀମତୀ ସଂଯୁକ୍ତା ପାଣିଗ୍ରାହୀ ମଧ୍ୟ ଉଚ୍ଚ ଶିକ୍ଷାପାଇଁ ମାନ୍ଦ୍ରାଜ ଯାଇଥିଲେ । ସେ ଆଜି ଓଡ଼ିଶୀ ନୃତ୍ୟର ଶ୍ରେଷ୍ଠ କଳାକାର । ସେତେବେଳେ ଶିକ୍ଷକମାନଙ୍କର ନିଷ୍ଠା ଓ ଛାତ୍ରଛାତ୍ରୀମାନଙ୍କର ଏକନିଷ୍ଠ ଅଧ୍ୟବସାୟ ଯୋଗୁଁ ସେହି ପାଞ୍ଚବର୍ଷ ଭିତରେ ବହୁ ଛାତ୍ରଛାତ୍ରୀ ଶ୍ରେଷ୍ଠ କଳାକାର ହିସାବରେ ବାହାରିଲେ । ପରବର୍ତ୍ତୀ ବର୍ଷମାନଙ୍କରେ ସେପରି ନିଷ୍ଠା ଓ ଅଧ୍ୟବସାୟର ଅଭାବ ଯୋଗୁ ଉଚ୍ଚସ୍ତରର କଳାକାର ବାହାରି ପାରିଲେ ନାହିଁ ।

ଓଡ଼ିଶୀ ସଙ୍ଗୀତ ଛଡ଼ା ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷାପାଇଁ ଶ୍ରୀ କ୍ଷିତୀଶ ଚନ୍ଦ୍ର ମୈତ୍ରଙ୍କ ପରି ଅଧ୍ୟକ୍ଷ କେନ୍ଦ୍ରରେ ଯୋଗଦେଲେ ଏବଂ ତାଙ୍କରି ପ୍ରଚେଷ୍ଟାରେ କେନ୍ଦ୍ର ଲକ୍ଷ୍ନୌ

ମଉସ୍ କଲେଜ (ଭାତଖଣ୍ଡେ ସଙ୍ଗୀତ ବିଦ୍ୟାପୀଠ) ସହିତ ସଂଶ୍ଳିଷ୍ଟ ହେଲା । ଆମ ଅନୁଷ୍ଠାନ କଲେଜ ହିସାବରେ ସରକାରଙ୍କ ସ୍ୱୀକୃତି ପାଇବାରେ ଏହା ବହୁତ ସାହାଯ୍ୟ କଲା । ଗୃହ କଳହ ସମୟରେ ଶ୍ରୀ କ୍ଷିତୀଶ ମୈତ୍ର ମଧ୍ୟ କେନ୍ଦ୍ର ଛାଡ଼ି ଚାଲିଗଲେ ଏବଂ ତାଙ୍କ ସ୍ଥାନରେ ଆଗ୍ରାରୁ ଶ୍ରୀ ସଲାମତ୍ ହୁସେନ ଖାଁ ଆସି କିଛି ଦିନ ଅଧ୍ୟକ୍ଷ ହିସାବରେ ଯୋଗଦେଲେ । କଟକରେ ସାମ୍ପ୍ରଦାୟିକ ଗଣ୍ଡଗୋଳ ସମୟରେ ସେ ମହାଶୟ ମଧ୍ୟ ରାତାରାତି କଟକ ଛାଡ଼ି ପଳାଇଲେ । ପରେ ବନାରସରୁ ଫେରିଥିବା ଜଣେ ଓଡ଼ିଆ ଯୁବକ ଶ୍ରୀ ସୁନୀଲ କୁମାର ଶତପଥି କେତେ ବର୍ଷ କେନ୍ଦ୍ରର ଅଧ୍ୟକ୍ଷ ହିସାବରେ କାର୍ଯ୍ୟ କଲେ । ସେ ମଧ୍ୟ ଆକାଶବାଣୀ ସଙ୍ଗୀତ ବିଭାଗର programme executive ହିସାବରେ ଯୋଗଦେଲା ପରେ ପୃଥ୍ୱୀ ଗୋଲ ପରି ପୁଣି ଘୁରିଘୁରି ସେହି ଶ୍ରୀ ବିଶ୍ୱନାଥ ରାଓ କେନ୍ଦ୍ରର ଅଧ୍ୟକ୍ଷ ହିସାବରେ ଅଧିଷ୍ଠାପିତ ହେଲେ । ଗୃହ କଳହ ସମୟରେ ସେ ମଧ୍ୟ କେନ୍ଦ୍ରର ବିମୁଖ ହୋଇଥିଲେ, କିନ୍ତୁ ବର୍ତ୍ତମାନ ମହାବିଦ୍ୟାଳୟର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ କିଷ୍ଠାର ସହ ଚେଷ୍ଟା କରୁଛନ୍ତି ।

୧୯୫୪ ମସିହାରେ କଟକରେ ପ୍ରଥମ କରି କଲିକତାର ଗୋଟିଏ କଥକ ଦଳକୁ ଅଣାଗଲା । ସେଠାର ବାଣୀ ବିଦ୍ୟାବୀଥିର ଅନ୍ୟତମ ଛାତ୍ରୀ ଶ୍ରୀମତୀ ବନ୍ଦନା ସେନଙ୍କର କଥକ ନୃତ୍ୟ ଓ ତାଙ୍କ ସହିତ ଶ୍ରୀ ରାମ ଗୋପାଳ ମିଶ୍ରଙ୍କର ତବଲା ସଙ୍ଗୀତ ଦର୍ଶକ ମଣ୍ଡଳୀକୁ ମୁଗ୍ଧ କରିଦେଲା । ଫଳରେ ଶ୍ରୀ ରାମଗୋପାଳ ମିଶ୍ରଙ୍କୁ କେନ୍ଦ୍ରର ଆଂଶିକ ଶିକ୍ଷକ ହିସାବରେ ସପ୍ତାହକୁ ଦୁଇଥର କଟକ ଆସି କଥକ ନୃତ୍ୟ ଶିକ୍ଷାଦେବା ପାଇଁ ନିଯୁକ୍ତ କରାଗଲା । ସ୍ୱର୍ଗୀୟା ପ୍ରତିମା ଦାସ କଥକ ନୃତ୍ୟରେ ସୁନାମ ଅର୍ଜିଲେ । କୁଙ୍କୁମ, ରଘୁନାଥ ଦତ୍ତ ପରି କେତେକ ଛାତ୍ରଛାତ୍ରୀ ମଧ୍ୟ କଥକ ନୃତ୍ୟରେ ଉଚ୍ଚ ଶିକ୍ଷା ପାଇଲେ ।

ହଠାତ୍ ଦିନେ ଦେଖାଗଲା ଯେ ଶ୍ରୀ ରାମଗୋପାଳ ବାବୁ ଗୋଟିଏ ଝିଅକୁ ସାଙ୍ଗରେ ନେଇ କଲିକତାରୁ ପଳାଇ ଆସିଛନ୍ତି । ସେ ଝିଅ ଥିଲେ ବାଣୀ ବିଦ୍ୟାବୀଥିର ମୁଖ୍ୟକର୍ତ୍ତ୍ରୀଙ୍କ ଝିଅ । ତାଙ୍କ ସଙ୍ଗରେ ଆଗରୁ ରାମଗୋପାଳ ବାବୁଙ୍କର ଭାବ ଥିଲା । ସେମାନେ ଅଭିଭାବକଙ୍କର ବିନା ଅନୁମତିରେ ରେଜେଷ୍ଟ୍ରି ବିବାହ କରି କଟକ ପଳାଇ ଆସିଥିଲେ । ଦିନେ ପୁଲିସ୍ ଆସି କଟକରେ ହାଜର ହେବାରୁ ଆମେ ଏହା ଜାଣି ପାରିଲୁ । ରାମଗୋପାଳ ବାବୁଙ୍କୁ ଜେଲ ହାଜତକୁ ନିଆଗଲା ଓ ସେ ଝିଅକୁ ଜାମିନରେ ଆଣି ମୋ ତତ୍ତ୍ୱାବଧାନରେ ମୋ ଘରେ ରଖିଲି । ଝିଅକୁ ନାବାଳିକା ହିସାବରେ ପ୍ରମାଣ କରିବାର ସକଳ ପ୍ରକାର ଚେଷ୍ଟା ବିଫଳ ହେବାପରେ ଏବଂ ଉଭୟ ଉଭୟଙ୍କୁ ଅତି ଭଲ ପାଉଥିବା ଦେଖି ଝିଅର ଅଭିଭାବକ ମକଦ୍ଦମା ଉଠାଇ ଆଣିଲେ ଓ ସେମାନେ ବିବାହିତ ଦମ୍ପତି ହିସାବରେ ଘର ଭଡ଼ା ନେଇ କଟକରେ

ରହିଲେ । କିନ୍ତୁ ରାମଗୋପାଳ ମିଶ୍ରଙ୍କ ପରି କଳାକାରଙ୍କୁ ବାନ୍ଧିରଖି ପାରିଲୁ ନାହିଁ । ସେ ପୁଣି ଗଲେ କଲିକତା । ଆଜିଯାଏ ସେମାନେ ସେମାନଙ୍କର ସଂସାର ନେଇ ସେଠାରେ ରହିଛନ୍ତି ଏବଂ ଉଭୟ କଥକ ନୃତ୍ୟରେ ଶିକ୍ଷକ ହିସାବରେ କଲିକତାର ଭିନ୍ନ ଭିନ୍ନ ସ୍କୁଲରେ କାର୍ଯ୍ୟ କରୁଛନ୍ତି । କେବେ କେବେ କଲିକତାରେ ଦେଖାହେଲେ ଆମର ଉପକାର ଭୁଲିପାରି ନଥିବା କଥା ଉଲ୍ଲେଖ କରନ୍ତି । ନଚେତ୍ ସେତେବେଳର ଅବସ୍ଥାରେ ରାମଗୋପାଳ ବାବୁ କେତେବର୍ଷ ଜେଲ ଭୋଗିଥାଆନ୍ତେ ଓ ଝିଅକୁ ଅନ୍ୟ ସ୍ଥାନରେ ବିବାହ କରି ଦେଇଥାଆନ୍ତେ ତାହା ଭାବିବା କଥା ।

ନୃତ୍ୟଗୀତ ବ୍ୟତୀତ ସେ ସମୟରେ କେନ୍ଦ୍ର ତରଫରୁ ଗୋଟିଏ ଅର୍କେଷ୍ଟ୍ରା ଦଳ ମଧ୍ୟ ସଙ୍ଗଠିତ କରାଯାଇଥିଲା । ଶ୍ରୀ ନରେନ ମିଶ୍ର ଥିଲେ ଏହାର ଅଗ୍ରଣୀ । କଟକ ସହରର ବହୁ ନାମଜାଦା ପେଶାଦାର ଓ ସୌଖୀନ କଳାକାର ଏଥିରେ ଯୋଗ ଦେଇଥିଲେ । ମୁଁ ମଧ୍ୟ ଗୋଟିଏ ଯୋନ୍ତ୍ର ବାଦ୍ୟ ବଜାଉଥିଲି । ରାଭେନ୍ସା କଲେଜର ଅଧ୍ୟାପକ ଶ୍ରୀ ସୁବ୍ରମନ୍ୟମ୍‌ଙ୍କ ସ୍ତ୍ରୀ ଶ୍ରୀମତୀ ଇଣ୍ଡିଆ ଦେବୀ ପରି ବହୁ ସୌଖୀନ କଳାକାର ମଧ୍ୟ ଏଥିରେ ଅଂଶ ଗ୍ରହଣ କରୁଥିଲେ ଏବଂ ଏହା 'ଅର୍କେଷ୍ଟ୍ରା ଆର୍ଟିଷ୍ଟ ଆସୋସିଏସନ୍' ନାମରେ ପରିଚିତ ଥିଲା ।

## ନାଟକ ବିଭାଗ—'ଅଭିନୟ'

ସେହି ସମୟରେ କେନ୍ଦ୍ର ତରଫରୁ 'ଅଭିନୟ' ନାମକ ଏକ ସ୍ୱତନ୍ତ୍ର ନାଟକ ବିଭାଗ ଖୋଲାଯାଇ ତା' ଜରିଆରେ ବହୁ ମୌଳିକ ଓ ଅନୁବାଦିତ ନାଟକ ଓ ଏକାଙ୍କିକା ମଞ୍ଚସ୍ଥ ହେଲା । ଏହି ଅଭିନୟ ବିଭାଗରେ ହାଇକୋର୍ଟରେ କାର୍ଯ୍ୟ କରୁଥିବା ବହୁ ସୌଖୀନ କଳାକାର ଯୋଗଦେଲେ । ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ଆୟୋଜିତ ନାଟକ ପ୍ରତିଯୋଗିତାରେ ଆମର ନାଟକଗୁଡ଼ିକ କୃତିତ୍ୱର ସହିତ ଅଭିନୀତ ହୋଇ ପୁରସ୍କୃତ ହେଲା । ପୁରୀ ସଙ୍ଗୀତ ପରିଷଦଦ୍ୱାରା ପ୍ରତିବର୍ଷ ଆୟୋଜିତ ଶିଶୁ ନାଟକ ପ୍ରତିଯୋଗିତାରେ ମଧ୍ୟ ସେହିପରି ଆମର ଶିଶୁକଳାକାରମାନେ ପୁରସ୍କୃତ ହେଲେ ।

୧୯୫୫ ମସିହାରେ କଟକକୁ ଆସିଥିବା 'Shakespearana' ନାମକ ଏକ ପାଶ୍ଚାତ୍ୟ ନାଟ୍ୟଦଳର କେତେକ ନାଟକ କେନ୍ଦ୍ର ସାହାଯ୍ୟାର୍ଥେ ମଞ୍ଚସ୍ଥ ହେଲା । ଶ୍ରୀ ବିଧୁଭୂଷଣ ଦାସଙ୍କ ସୌଜନ୍ୟରେ ଆୟୋଜିତ ଏହି ସାହାଯ୍ୟ ରଜନୀର ଆୟର କେତେକାଂଶ ମେଡ଼ିକାଲ୍ କଲେଜର Social Service Guildକୁ ଦାନ କରାଗଲା ।

୧୯୫୮ ମସିହାରେ କଲିକତାର 'ଥିଏଟର ସେଣ୍ଟର' ଦ୍ୱାରା ଆୟୋଜିତ ଅଖିଳ ଭାରତ ଏକାଙ୍କିକା ପ୍ରତିଯୋଗିତାରେ ଆମେ ଯୋଗଦେଲୁ । ଅଧ୍ୟାପକ

ପ୍ରାଣବନ୍ଧୁ କରଙ୍କ 'ଶ୍ୱେତପଦ୍ମା' ଏକାଙ୍କିକା ସ୍ୱର୍ଗତ ଖଗେନ ମିଶ୍ରଙ୍କର ନିର୍ଦ୍ଦେଶନାରେ ଆମେ ପରିବେଷଣ କଲୁ । ଭିନ୍ନ ଭିନ୍ନ ସ୍ଥାନରୁ ଆସିଥିବା ୪୫ ଗୋଟି ନାଟ୍ୟଦଳ ମଧ୍ୟରେ ଆମଦଳ ସର୍ବଶ୍ରେଷ୍ଠ ବିବେଚିତ ହୋଇ ପ୍ରଥମ ପୁରସ୍କାର ପାଇଲା । କଲିକତାର 'ଦେଶ' ପରି ପତ୍ରପତ୍ରିକାମାନଙ୍କରେ କଳା ବିକାଶ କେନ୍ଦ୍ରର ପ୍ରଶଂସା ପ୍ରକାଶିତ ହେଲା ।

ଏହାପରି ନାଟକ ବିଭାଗରେ ମଧ୍ୟ କେନ୍ଦ୍ର ଉଚ୍ଚସ୍ଥାନ ଅଧିକାର କଲା । କେନ୍ଦ୍ର ତରଫରୁ "ଉତ୍କଳ ଆମେଚର ଆର୍ଟିଷ୍ଟ ଓ ପ୍ଲେରାଇଟ୍ ଆସୋସିଏସନ" ନାମକ ଗୋଟିଏ ସଂଘ ଗଢ଼ାଗଲା । ସେଥିରେ ମଧ୍ୟ ବହୁନାମୀ କଳାକାର ଓ ନିର୍ଦ୍ଦେଶକମାନେ ଯୋଗଦେଲେ ।

ପରେ ପରେ କେନ୍ଦ୍ର ତରଫରୁ ଗୋଟିଏ ନାଟ୍ୟ ଶିବିରର ମଧ୍ୟ ଆୟୋଜନ କରାଯାଇଥିଲା । ଜନତା ରଙ୍ଗମଞ୍ଚରେ ଆୟୋଜିତ "ଟ୍ରେନିଂ କ୍ୟାମ୍ପ ଅଫ୍ ଡ୍ରାମାଟିକସ୍"ରେ ମୁଖ୍ୟ ପରିଚାଳକ ହିସାବରେ ପରିଚାଳନା କଲେ ସେ ସମୟର ଦିଲ୍ଲୀରୁ ନାଟ୍ୟ ଶିକ୍ଷାପ୍ରାପ୍ତ ଶ୍ରୀ ବ୍ୟୋମକେଶ ତ୍ରିପାଠୀ । ଏହି ଶିବିରରେ ଶ୍ରୀ ଅକ୍ଷୟ ମହାନ୍ତି (ନାଟ୍ୟକାର)ଙ୍କ ଦଳ ଓ ଅନ୍ୟମାନେ ଯୋଗଦେଇଥିଲେ ।

ସେହି ସମୟରେ ଭାରତ ସରକାରଙ୍କ ତରଫରୁ "National School of Drama and Asian Theatre Institute" ନାମକ ଶିକ୍ଷା ସଂସ୍ଥା ଖୋଲି ଯାଇଥାଏ । ସେପରି ଆଜି ପୁନା ଟେଲିଭିଜନରେ କାର୍ଯ୍ୟ କରୁଥିବା ଶ୍ରୀ ଦ୍ୱିଜେନ୍ଦ୍ରନାଥ ଗିରିଙ୍କ ପରି କେତେକ ଶିକ୍ଷାର୍ଥୀଙ୍କୁ କେନ୍ଦ୍ର ତରଫରୁ ପଠାଯାଇଥିଲା ।

ଖଗେନ ମିଶ୍ର, ବିମଳବାବୁଙ୍କ ପରି ବହୁ ନାଟ୍ୟ ନିର୍ଦ୍ଦେଶକଙ୍କ ପରିଚାଳନାରେ ଏହି ନାଟ୍ୟ ବିଭାଗରେ ଶ୍ରୀ କ୍ଷେତ୍ରପାଳ ମିଶ୍ର, ଦେବୀରାଣୀ ଦେଙ୍କ ପରି ବହୁ ସୌଖୀନ କଳାକାର ନାମ ଅର୍ଜିଲେ ।

ଭାରତୀୟ ନାଟ୍ୟ ସଂଘର ସେତେବେଳର ନେତ୍ରୀ ଶ୍ରୀମତୀ କମଳା ଦେବୀ ଚଟ୍ଟୋପାଧ୍ୟାୟ ଓଡ଼ିଶାକୁ ଆସି ଆମ କେନ୍ଦ୍ରର କାର୍ଯ୍ୟକଳାପ ଦେଖି ପ୍ରୀତ ହୋଇଥିଲେ । ସେତେବେଳେ ଓଡ଼ିଶାରେ ସେହି ସଂଘର ଶାଖା, ଉତ୍କଳ ନାଟ୍ୟ ସଂଘ ସ୍ଥାପନା ହୋଇଥିଲେ ମଧ୍ୟ ସୁପ୍ତ ଅବସ୍ଥାରେ ଥିଲା । ଏହି ଉତ୍କଳ ନାଟ୍ୟ ସଂଘକୁ ପୁନର୍ଜୀବନ ଦେବାପାଇଁ ସେ ମୋତେ ପରାମର୍ଶ ଦେଲେ । ବହୁ ଗୋଳମାଳ ପରେ ଉତ୍କଳ ନାଟ୍ୟ ସଂଘର ପରିଚାଳନା ଭାର ମୋ ହାତକୁ ଆସିଲା ଏବଂ କେନ୍ଦ୍ରର ବହୁ ଲୋକେ ଏଥି ସହିତ ଜଡ଼ିତ ହେଲେ । ସେହି ବର୍ଷ ପୁଣି ମୋତେ ଭାରତୀୟ ନାଟ୍ୟ ସଂଘର ସହ ସମ୍ପାଦକ ହିସାବରେ ବାଛିଲେ ଏବଂ ଏଥିପାଇଁ ମୋତେ କେତେବାର ଦିଲ୍ଲୀ ଯିବାକୁ ପଡ଼ିଥିଲା ।

ଭାରତୀୟ ନାଟ୍ୟ ସଂଘର ଗୋଟିଏ ମହତ୍ତ୍ୱ କାର୍ଯ୍ୟ ଓଡ଼ିଶାରେ ନାଟ୍ୟକଳାର ଉନ୍ନତି । ସୁତରାଂ ଏହି ସଂଘ ଜରିଆରେ ଆମେ କେତେକ ଶ୍ରେଷ୍ଠ ବଡ଼ ନାଟକ ମଞ୍ଚସ୍ଥ କରୁଥିଲୁ । ପ୍ରତି ବର୍ଷ ବିଶ୍ୱନାଟ୍ୟ ସଂଘ ଦିବସ ମଧ୍ୟ ଆୟୋଜନ କରୁଥିଲୁ । ରାଜ୍ୟରେ ନାଟକ କ୍ଷେତ୍ରରେ କାର୍ଯ୍ୟ କରୁଥିବା ନାଟକଦଳ ଓ ବିଭିନ୍ନ ରଙ୍ଗମଞ୍ଚର ପରିସ୍ଥିତି ବିଷୟ ନେଇ ଗୋଟିଏ ଗବେଷଣା କାର୍ଯ୍ୟ ମୁଁ ଶ୍ରୀ ବିଶ୍ୱନାଥ ସାହୁଙ୍କ ସାହାଯ୍ୟରେ କରାଇଥିଲି ଏବଂ ଏହା ଉପରେ ଏକ ବିସ୍ତୃତ ବିବରଣୀ ଭାରତୀୟ ନାଟ୍ୟ ସଂଘକୁ ଆମେ ଯୋଗାଇଥିଲୁ ।

ଉତ୍କଳ ନାଟ୍ୟସଂଘ କେତେକ ସମୟ ଧରି ଭଲଭାବରେ ଚାଲିବା ପରେ ଏବଂ ଆମର ଲୋକେ ସେ କାର୍ଯ୍ୟରେ ଜଡ଼ିତ ହେବାରୁ କେନ୍ଦ୍ର କାର୍ଯ୍ୟରେ ବାଧା ସୃଷ୍ଟି ହେଲା । ବହୁ ଲୋକ ଏହାକୁ କେନ୍ଦ୍ରର ଗୋଟିଏ ଲାଙ୍ଗୁଡ଼ ବୋଲି କହିବାକୁ ଆରମ୍ଭ କଲେ ଏବଂ ସବୁ ଦୃଷ୍ଟିରୁ ବିଚାରକରି ମୁଁ ନାଟ୍ୟ ସଂଘରୁ ଓହରିଗଲି । ସେତେବେଳର ମୋର ବିଶ୍ୱାସୀ ବନ୍ଧୁ ଶ୍ରୀ ବୃନ୍ଦାବନ ଚନ୍ଦ୍ର ରଥଙ୍କୁ ମୁଁ ଏହି ନାଟ୍ୟସଂଘର ପରିଚାଳନା ଭାରଦେଲି ।

ଶ୍ରୀ ବୃନ୍ଦାବନ ବାବୁ ହାଇକୋର୍ଟରେ କାର୍ଯ୍ୟ କରୁଥାଆନ୍ତି ଏବଂ ହାଇକୋର୍ଟ ନାଟ୍ୟଦଳର ଯେଉଁ କର୍ମକର୍ତ୍ତାମାନେ କେନ୍ଦ୍ରରେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରୁ ବୃନ୍ଦାବନ ଭାଇନା ଅନ୍ୟତମ ।

ଭାଇନା କେନ୍ଦ୍ରର ଅନେକ କାର୍ଯ୍ୟରେ ମୋର ସହଯୋଗୀ ଭାବରେ କାର୍ଯ୍ୟ କରୁଥିଲେ । କେନ୍ଦ୍ରର ଅନେକ ସୁଖ ଦୁଃଖରେ ସେ ଭାଗୀ ହେଉଥିଲେ । ଅନେକ ସମୟରେ ମୁଁ ଭାଙ୍ଗିପଡ଼ୁଥିବା ବେଳେ ସେ ମୋତେ ସାହସ ଦେଉଥିଲେ । ନିଜର ଆତ୍ମୀୟ ସ୍ୱଜନ ପରି ଉଭୟେ ଉଭୟଙ୍କର ଘରୋଇ ସୁଖ ଦୁଃଖରେ ମଧ୍ୟ ଭାଗୀଦାରଥିଲୁ ।

ଭାଇନା ଉତ୍କଳ ନାଟ୍ୟସଂଘ ସହିତ ପରେ ପରେ ଏତେ ଓତଃପ୍ରୋତ ଭାବରେ ଜଡ଼ିତ ହେଲେ ଯେ ସେ କେନ୍ଦ୍ର କଥା ମଧ୍ୟ ଭୁଲିଗଲେ । ନାଟ୍ୟସଂଘକୁ ସେ ପ୍ରଥମ ସ୍ଥାନ ଦେଇ କେନ୍ଦ୍ରକୁ ଦ୍ୱିତୀୟ ସ୍ଥାନଦେଲେ । ଆମ୍ଭେମାନେ କେନ୍ଦ୍ରକୁ ଅଗ୍ରାଧିକାର ଦେଇ ପରେ ଅନ୍ୟ କଥା ଭାବୁଥିଲୁ । କେନ୍ଦ୍ରକୁ ତ' ସବୁବେଳେ ଅଭାବ ଘୋଟି ରହିଥାଏ । ବିଭିନ୍ନ ବିଭାଗରେ କାର୍ଯ୍ୟ ଏତେ ଯେ କାହାକୁ ଫୁରସତ ନାହିଁ । ଏହିପରି ଅବସ୍ଥାରେ ଅନୁଷ୍ଠାନର ଲୋକେ ଉତ୍କଳ ନାଟ୍ୟ ସଂଘକୁ ସାହାଯ୍ୟ ନ କରିବାରେ ଭାଇନାଙ୍କ ମନରେ ଗ୍ଳାନି ଆସିଲା । ସେହି ଅନୁଷ୍ଠାନରେ ପୁଣି କେତେକ ବିରୋଧୀ ଲୋକ ଯୋଗଦେଲେ ଏବଂ ଭାଇନାଙ୍କୁ ଆମ ବିରୋଧରେ ଅନେକ କଥା କହିଲେ । ଏହିପରି ଅବସ୍ଥାରେ ଆମେ ନାଟ୍ୟ ସଂଘରୁ ଦୂରେଇ ଗଲୁ ଏବଂ ଭାଇନା

ମଧ୍ୟ କେନ୍ଦ୍ରଠାରୁ ଦୂରେଇ ଗଲେ । ଏହା ଅବଶ୍ୟ ଗୋଟିଏ ଦୁର୍ଘଟଣା । ତାଙ୍କପରି ସାଥୀ ହରାଇବାରୁ ମୁଁ ବ୍ୟକ୍ତିଗତ ଭାବରେ ଦୁଃଖିତ ।

## ରାଜ ଭବନକୁ ନିମନ୍ତ୍ରଣ—

୧୯୫୪ ମସିହା ୨୬ ଜାନୁୟାରୀ ଦିନ ପ୍ରଥମ କରି କେନ୍ଦ୍ର କଳାକାରମାନଙ୍କୁ କଟକ ରାଜଭବନରେ ନିମନ୍ତ୍ରଣ ମିଳିଲା । ପରେ ପରେ ତିନି ଚାରିବର୍ଷ ପର୍ଯ୍ୟନ୍ତ ପ୍ରତ୍ୟେକ ବଡ଼ ଉତ୍ସବରେ ଓ ବିଶେଷ ବ୍ୟକ୍ତିମାନଙ୍କ ଆଗମନ ଉପଲକ୍ଷେ ଆୟୋଜିତ ବିଭିନ୍ନ ମିଳନରେ କଳା ବିକାଶ କେନ୍ଦ୍ରକୁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ପରିବେଷଣ ପାଇଁ ଡକାଗଲା । ସେତେବେଳର ରାଜ୍ୟପାଳ ଶ୍ରୀ ଭୀମସେନ ସାଚ୍ଚରଙ୍କ ଅମଳରେ ଆମ୍ଭମାନଙ୍କୁ ଏପରି ସବୁଠୁ ବେଶି ସୁଯୋଗ ମିଳିଥିଲା । ଏପରିକି ପଣ୍ଡିତ ନେହେରୁଙ୍କ ଆଗମନ ଉପଲକ୍ଷେ ଆୟୋଜିତ ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମରେ କଳା ବିକାଶ କେନ୍ଦ୍ର ଦ୍ୱାରା ବିଚିତ୍ରାନୁଷ୍ଠାନ ପରିବେଷଣ କରାଯାଇଥିଲା । ପଣ୍ଡିତଜୀ ସ୍ୱହସ୍ତରେ ଆମ ପରିଦର୍ଶକ ପୁସ୍ତକରେ ମନ୍ତବ୍ୟ ଦେଇ କଳାକାରମାନଙ୍କୁ ଉଚ୍ଚ ପ୍ରଶଂସା କରିଥିଲେ ।

ତା ପରର ରାଜ୍ୟପାଳ ଶ୍ରୀ ଓ୍ୱାଇ. ଏନ୍. ସୁକଠକରଙ୍କ ଅମଳରେ ମଧ୍ୟ କେତେଦିନ ଆମ୍ଭେମାନେ ଏପରି ସୁଯୋଗ ପାଇଲୁ, କିନ୍ତୁ ରାଜ୍ୟପାଳଙ୍କ ପ୍ରାଇଭେଟ ସେକ୍ରେଟେରୀଙ୍କ ସହିତ ମତଭେଦ ଘଟିବାରୁ ତା'ପରେ ସବୁଦିନ ପାଇଁ ରାଜଭବନ ସହିତ ଆମର ସମ୍ବନ୍ଧଚ୍ଛିନ୍ନ ହୋଇଗଲା ଓ ସେହିଦିନଠାରୁ ରାଜଭବନରେ ବିଚିତ୍ରାନୁଷ୍ଠାନ ହେବାର ପ୍ରଥା ବନ୍ଦ ହୋଇଗଲା ।

ସେତେବେଳେ ରାଜ୍ୟପାଳ ଥିଲେ ବ୍ଲଡ଼ ବ୍ୟାଙ୍କର ସଭାପତି ଏବଂ ସେକ୍ରେଟେରୀ ଥିଲେ ରାଜ୍ୟପାଳଙ୍କ ସେକ୍ରେଟେରୀ । କଳା ବିକାଶ କେନ୍ଦ୍ର ଦ୍ୱାରା ଏହି ବ୍ଲଡ଼ ବ୍ୟାଙ୍କ ସାହାଯ୍ୟ ପାଇଁ କଟକ, ଭୁବନେଶ୍ୱର, ଜୟପୁର, ବଡ଼ବିଲ୍ ପରି ବହୁ ସ୍ଥାନରେ ସାହାଯ୍ୟ ରଜନୀର ଆୟୋଜନ କରାଗଲା । ମୋର ମନେ ଅଛି, ଜୟପୁରରେ ପ୍ରାୟ ବାଇଶ ହଜାର ଓ ବଡ଼ବିଲରେ ପ୍ରାୟ ତିରିଶ ହଜାର ଟଙ୍କା ଆଦାୟ ହୋଇଥିଲା । କିନ୍ତୁ ସେକ୍ରେଟେରୀ ସାହେବ କେନ୍ଦ୍ରକୁ ୫୦୦ ଟଙ୍କା ଦେବାକୁ ମଧ୍ୟ କୁଣ୍ଠାବୋଧ କଲେ । ବାଳକୃଷ୍ଣ ବାବୁଙ୍କ ପରି ବହୁ ସଙ୍ଗୀତଜ୍ଞ ଓ ବିଶିଷ୍ଟ ନୃତ୍ୟ କଳାକାର ଏଥିରେ ଯୋଗ ଦେଉଥିଲେ ମଧ୍ୟ ସେ ତାଙ୍କର ମୂଲ୍ୟ ବୁଝିଲେ ନାହିଁ । କହିଲେ, "କେନ୍ଦ୍ର ତ ରାଜ୍ୟ ସରକାରଙ୍କଠାରୁ ଗ୍ରାଣ୍ଟ ପାଉଛି । ଆମେ ଆଉ ଦେବୁ କାହିଁକି ?" ଏହି ମତଭେଦ ଏତେ ବ୍ୟାପିଲା ଯେ ରାଜ୍ୟପାଳ ସେହି ବର୍ଷର କେନ୍ଦ୍ରର ବାର୍ଷିକ ଉତ୍ସବର ଉଦ୍‌ଘାଟକ ହିସାବରେ ଯୋଗ ଦେବାର ସମ୍ମତି ଦେଇଥିଲେ ମଧ୍ୟ ଆସିପାରିଲେ ନାହିଁ । ଆମର ମୁଖ୍ୟପତି ଡକ୍ଟର୍ ୧ ଶର୍ମା ମଧ୍ୟ ସେତେବେଳେ ବ୍ଲଡ଼ ବ୍ୟାଙ୍କ ସହିତ ସମ୍ପୃକ୍ତ ଥିଲେ ଏବଂ ଏହି ଗୋଳମାଳରେ ହସ୍ତକ୍ଷେପ କଲେ ମଧ୍ୟ କିଛି

ସମାଧାନ ହୋଇପାରିଲା ନାହିଁ । ସେହି ଗୋଳମାଳ ପରେ ପରେ ପରିଜା ସାହେବ କେନ୍ଦ୍ରର ସଭାପତିତ୍ୱ ଛାଡ଼ିଲେ । ଆମ୍ଭମାନଙ୍କୁ ମଧ୍ୟ ନାନାଆଡ଼ୁ ହଇରାଣ ହେବାକୁ ପଡ଼ିଲା । ଏପରିକି ଆମେ ପାଇସାରିଥିବା ଜମିର ଲିଜ୍ ମଧ୍ୟ ରଦ୍ଦ କରିବା ପାଇଁ ଚେଷ୍ଟା କରାଗଲା, କିନ୍ତୁ କେନ୍ଦ୍ରର ଜନପ୍ରିୟତା ହେତୁ ଆମର କେହି କିଛି ଅନିଷ୍ଟ କରିପାରିଲେ ନାହିଁ । ଶେଷରେ ସୁକଠଙ୍କର ସାହେବ ଏକଥା ହୃଦୟଙ୍ଗମ କଲେ ଏବଂ ଓଡ଼ିଶା ଛାଡ଼ିବା ସମୟରେ କେନ୍ଦ୍ର ପରିଦର୍ଶନରେ ଆସି ଆମ୍ଭମାନଙ୍କୁ ଉତ୍ସାହିତ କଲେ ଓ ଆଶୀର୍ବାଦ ଦେଲେ ।

୧୯୬୦ର ବିପ୍ଳବ ମିଳନ ଉତ୍ସବରେ ଶ୍ରୀ ସୁକଠଙ୍କର ପୌରହିତ୍ୟ କରିଥିଲେ । ଉତ୍କଳର ମହତାବ ଥିଲେ ପୁରୋଧା । ଏମାନଙ୍କର ସ୍ୱାକ୍ଷରରେ ମୋତେ ୧୯୬୦ର ଶ୍ରେଷ୍ଠ କର୍ମୀ ହିସାବରେ ମାନପତ୍ର ମିଳିଥିଲା ।

ମୁଁ ଆଗରୁ ଲେଖିଛି ଯେ କେନ୍ଦ୍ରର ଉନ୍ନତ ଦିଗରେ ଈର୍ଷାନ୍ୱିତ ହୋଇ ବହୁ ଲୋକ ଏହାର ଅନିଷ୍ଟ କରିବାକୁ ଚେଷ୍ଟା କରନ୍ତି । ଆଉ କେତେକ ଦୃଷ୍ଟାନ୍ତ ଶୁଣନ୍ତୁ । ରାଜଭବନରେ ଏବଂ ଗୋଟିଏ ମୀନା ମେଳାରେ ପଣ୍ଡିତ ନେହେରୁ ଆମର କାର୍ଯ୍ୟ ପ୍ରତି ଆଗ୍ରହ ଦେଖାଇଥିଲେ । ପରେ ଆମେ ତାଙ୍କୁ ସାହାଯ୍ୟ ପାଇଁ ଦରଖାସ୍ତ କଲୁ ଏବଂ ଅଳ୍ପ ଦିନ ପରେ ସେ ତାଙ୍କର ହାତ ପାଣ୍ଠିରୁ କେନ୍ଦ୍ର ପାଇଁ ୧୦,୦୦୦ ଟଙ୍କା ପଠାଇଲେ । ଏ ଖବର ଆମେ ସାଙ୍ଗେ ସାଙ୍ଗେ ଟେଲିଫୋନଦ୍ୱାରା ପାଇଲୁ, କିନ୍ତୁ ଯାହାଙ୍କ ପାଖକୁ ଏ ଟଙ୍କା ଆସିଥିଲା ସେ ଆମ ରାଜ୍ୟର ଜଣେ ସମ୍ମାନାସ୍ପଦ ନେତା । ସେ ଆଉ ଧରିଛୁଆଁ ଦେଲେ ନାହିଁ । ଚିଠି ଦେଖିଲୁ । ଜବାବ ମଧ୍ୟ ମିଳିଲା ନାହିଁ । ସହଜରେ ସାକ୍ଷାତ ମଧ୍ୟ ଦେଲେ ନାହିଁ ଏବଂ ଦେଖା ହେଲାବେଳେ ଜାଣି-ଶୁଣି ଚିଡ଼ି ଅନ୍ୟ ରକମ କଥା କହି ଏ କଥାକୁ ଏଡ଼ାଇଲେ । ଏହିପରି ଉତ୍କଳର ଆନସାରୀ ରାଜ୍ୟପାଳ ଥିବା ସମୟରେ ତାଙ୍କ ପାଖରେ ରହୁଥିଲେ ଜଣେ ଉର୍ଦ୍ଦୁ କବି । ସେ ଅନୁଷ୍ଠାନକୁ ଭଲ ପାଉଥିଲେ । ମୁଁ ମଧ୍ୟ ରାଜଭବନରେ ବାରମ୍ବାର ତାଙ୍କ ସହ ଦେଖାକରୁଥିଲି । ତାଙ୍କର ପ୍ରଚେଷ୍ଟାରେ ରାଜ୍ୟପାଳ ମହୋଦୟ ସାଂସ୍କୃତିକ ବିଭାଗକୁ ୧୦,୦୦୦ ଟଙ୍କା ସାହାଯ୍ୟ ଦେବାପାଇଁ ଲେଖିଲେ । ସେ ବିଭାଗର ଜଣେ ପଦସ୍ଥ କର୍ମଚାରୀ ସେ ଫାଇଲକୁ ଏକାବେଳକେ ଗାଏବ କରିଦେଲେ । ମୁଁ ବ୍ୟକ୍ତିଗତ କାହାରି ନାମ ଉଲ୍ଲେଖ କରୁନାହିଁ । କିନ୍ତୁ ଏହିପରି ସରକାର ବିଭାଗର କେତେକ କର୍ମଚାରୀଙ୍କ ଯୋଗୁ କେବଳ ଆମେ ନୋହୁଁ, ବହୁ ଅନୁଷ୍ଠାନ ଏହିପରି ହଟହଟା ହେଉଛନ୍ତି । ଆମର ତ ବହୁ ରକମ ସାହାଯ୍ୟ ସୁପାରିଶ ହୋଇଛି ଏବଂ ଏପରି ଅନେକ ସମୟରେ ଏହି ଫାଇଲ ସବୁ ଠିକ୍ ସମୟରେ ଠିକ ସ୍ଥାନରେ ପହଞ୍ଚି ପାରୁନାହିଁ କିମ୍ବା ଗାଏବ ହୋଇଛି । ଏସବୁ କାରଣରୁ କେତେକ ଘଟଣାରେ ଆମର ଦରଖାସ୍ତ ଠିକ ସମୟରେ ସୁପାରିଶ ହୋଇ ଭାରତ ସରକାରଙ୍କ ନିକଟକୁ ପଠାଯାଇ ନଥିବାରୁ ଆମେ

ଅନେକ ସାହାଯ୍ୟରୁ ବଞ୍ଚିତ ହୋଇଛୁ । ଆମର ଜଣେ ଶୁଭେଚ୍ଛୁ, ମନ୍ତ୍ରୀ ମନ୍ତ୍ରୀପଦ ଗ୍ରହଣ କରିବା ପୂର୍ବରୁ ଆମକୁ ସାହାଯ୍ୟ ଦେବାର ପ୍ରସ୍ତାବ ରଖି ଥରକୁ ଥର ତାଙ୍କର ବିଭାଗରୁ ଫାଇଲ ମଗାଇଲେ ମଧ୍ୟ ତାଙ୍କ ପାଖରେ ଫାଇଲ ପହଞ୍ଚି ପାରିଲା ନାହିଁ ।

ଏହିପରି ଆଉ ଜଣେ ମନ୍ତ୍ରୀ ତାଙ୍କ ବିଭାଗ ଜରିଆରେ କେନ୍ଦ୍ରର ଗୃହ ନିର୍ମାଣ ପାଇଁ ୧୦,୦୦୦ ଟଙ୍କା ସାହାଯ୍ୟ ସୁପାରିଶ କରାଇବାବେଳକୁ କୌଣସି କାରଣରୁ ତାଙ୍କୁ ମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ପଡ଼ିଲା । ପରେ ସେହି ବିଭାଗର ସଚିବ ବହୁ ଚେଷ୍ଟା ସତ୍ତ୍ୱେ ସାକ୍ଷାତ ଦେଲେ ନାହିଁ ଏବଂ ସେ ବର୍ଷ ଏ ଗ୍ରାଣ୍ଟ ହରାଇଲୁ ।

ଏପରି ଏକ ସମୟରେ ରାଜ୍ୟ ଏକାଡେମୀରେ ମଧ୍ୟ କେନ୍ଦ୍ର ବିଷୟରେ ବିକୃତ ବିବରଣୀ ପହଞ୍ଚିବାରୁ ଗ୍ରାଣ୍ଟ କଟିଯାଇଥିଲା ଓ ବହୁ ଚେଷ୍ଟାପରେ ତାହା ପରେ ମିଳିଲା ।

ଦିଲ୍ଲୀ ଏକାଡେମୀରୁ ପ୍ରଥମ ଥର ପାଇଁ ଆମକୁ ଯେତେବେଳେ ଟ ୫,୦୦୦ ମଞ୍ଜୁର ହୋଇ ଆସିଲା ସେତେବେଳେ ଆମେ ଖୁବ ଖୁସି ହେଲୁ, କିନ୍ତୁ ପରେ ସେ ଏକାଡେମୀର ଜଣେ ଉଚ୍ଚପଦସ୍ଥ କର୍ମଚାରୀ ବହୁ ଟଙ୍କା ଆତ୍ମସାତ୍ କରିବାରୁ ଆମର ଗ୍ରାଣ୍ଟ ଆର୍ଥିକ ବର୍ଷ ଶେଷ ହେଲେ ମଧ୍ୟ ଆସିଲା ନାହିଁ । ଏହିପରି ଅନେକ ଅନୁଷ୍ଠାନ ଗ୍ରାଣ୍ଟରୁ ବଞ୍ଚିତ ହୋଇଥିଲେ, କିନ୍ତୁ ଆମେ ସଙ୍ଗେ ସଙ୍ଗେ ଦିଲ୍ଲୀ ପହଞ୍ଚିଲୁ । ସେଠାରେ ଓଡ଼ିଶାର ବହୁ ଲୋକଙ୍କୁ ଧରାଧରି କରି ଏ ସାହାଯ୍ୟ ନ ଆଣିବା ଯାଏ ନିଶ୍ଚିନ୍ତ ହୋଇ ପାରିଲୁ ନାହିଁ ।

କେନ୍ଦ୍ରକୁ କେବଳ ସମସ୍ତେ ଯେ ଈର୍ଷା କରୁଥିଲେ ତାହା ନୁହେଁ, ବହୁଲୋକ ବହୁ ରକମର ସାହାଯ୍ୟ ମଧ୍ୟ କରୁଥିଲେ । ବହୁ ସରକାରୀ କର୍ମଚାରୀ ଏବଂ ସମ୍ମାନିତ ବ୍ୟକ୍ତିଙ୍କ ପ୍ରଭାବରେ ଆମ୍ଭେମାନେ ଅନେକ ସମୟରେ ଅଯାଚିତ ଭାବରେ ସାହାଯ୍ୟ ପାଇଛୁ । ୧୦୦ ଟଙ୍କା, ୨୦୦ ଟଙ୍କା, ୫୦୦ ଟଙ୍କା ନୁହେଁ, କିନ୍ତୁ ଏକ ସମୟରେ ଆମେ ୨୦,୦୦୦ ଟଙ୍କା ପର୍ଯ୍ୟନ୍ତ ସରକାରୀ ସାହାଯ୍ୟ ମଧ୍ୟ ଏହିପରି ପାଇଥିଲୁ ।

ଆମର ଜଣେ ଶୁଭେଚ୍ଛୁ ସେ ସମୟରେ ଗୋଟିଏ ଉଚ୍ଚ ସରକାରୀ ପଦାଧିକାରୀ ଥିଲେ । ସେ ବାରମ୍ବାର ଗସ୍ତରେ ଯାଆନ୍ତି । ତାଙ୍କ ସହିତ ବଇଭିଭ କମ୍ପା ଆଦି କାହାକୁ ନଥାନ୍ତି । ସବୁ ସ୍ଥାନରେ ପହଞ୍ଚିଲେ ସେ ପ୍ରଥମେ ବଇଭିଭ ଏବଂ କେନ୍ଦ୍ରର ପରିଚୟ ଦିଅନ୍ତି ଏବଂ କହି ଦିଅନ୍ତି 'ସ୍ୱାଙ୍କ କଥା ଟିକିଏ ବୁଝିବେ !' ବାସ୍, ତା'ପରେ ଆଉ ଅସୁବିଧା କ'ଣ ? ସହଜରେ ସାହାଯ୍ୟ ମିଳିଯାଉଥିଲା । ଏହିପରି ସର୍ବଶ୍ରୀ ଖଟାଉ ସୁନ୍ଦର ଦାସ, ଗିରିଧାରୀ ଲାଲ୍ କେଡ଼ିଆ, ବାସୁଦେବ ଅଗ୍ରୱାଲ, ସ୍ୱ ବୈଦ୍ୟନାଥ ହାଲନଙ୍କ ପରି ବହୁ ଶୁଭେଚ୍ଛୁ ବନ୍ଧୁ ବିନା ଦ୍ୱିଧାରେ ସବୁବେଳେ କେନ୍ଦ୍ରକୁ ସାହାଯ୍ୟ ଯୋଗାଇଛନ୍ତି । ଶ୍ରୀ ଏଚ୍. ନାଏକଙ୍କ ପରି କେନ୍ଦ୍ରର ଶୁଭେଚ୍ଛୁ

ଅନୁଷ୍ଠାନର ହିସାବ ବିନା ପାରିଶ୍ରମିକରେ ଯାଞ୍ଚ କରୁଛନ୍ତି । କେନ୍ଦ୍ରକୁ ବାରମ୍ବାର ଟଙ୍କା ସାହାଯ୍ୟ ମଧ୍ୟ ଦେଇଛନ୍ତି । ଏମାନେ ସମସ୍ତେ ହେଉଛନ୍ତି କେନ୍ଦ୍ରର ବାସ୍ତବ ବନ୍ଧୁ ।

କେନ୍ଦ୍ରର ନାନାବିଧ କାର୍ଯ୍ୟକଳାପ ଯୋଗୁ ସବୁ ମହଲରେ ଆମର ପ୍ରବେଶ ଥିଲା । ଏପରି କୌଣସି ବଡ଼ ଅନୁଷ୍ଠାନ ରାଜ୍ୟରେ ନଥିବାରୁ ଆମେ ଯେ କୌଣସି କଥାରେ ସାହାଯ୍ୟ ମାଗିଲେ ପ୍ରତ୍ୟେକ ସରକାରୀ ବିଭାଗରୁ ଆମକୁ ସାହାଯ୍ୟ ମିଳୁଥିଲା ।

ମୋର ମନେ ଅଛି, କବି ମେହେରଙ୍କ ଜନ୍ମଶତାବ୍ଦୀ ଆମେ କେନ୍ଦ୍ର ତରଫରୁ ବହୁ ସମାରୋହରେ ପାଳନ କଲାବେଳେ ତାଙ୍କର 'ତପସ୍ୱିନୀ' ଲେଖାରୁ ଏକ ନୃତ୍ୟ ନାଟିକା ଓଡ଼ିଶାରେ ପ୍ରଥମ କରି ଘୂର୍ଣ୍ଣାୟମାନ ରଙ୍ଗମଞ୍ଚ (Revolving Stage)ରେ କରିଥିଲୁ । ନିକଟରେ ଦିଲ୍ଲୀରୁ ଫେରିଥିବା ଆମର ଶିକ୍ଷକ ଶ୍ରୀ ମାୟାଧର ରାଉତ ଏହାର ନିର୍ଦ୍ଦେଶନା ଦେଲେ । ପ୍ରାୟ ୧୫୦ ଜଣ କଳାକାର ଏଥିରେ ଭାଗ ନେଇଥିଲେ । କଟକରେ ଲଗ ଲଗ ତିନିଦିନ ଧରି ଏହି ନୃତ୍ୟ ନାଟିକା ମଞ୍ଚସ୍ଥ ହେଲା । ଖର୍ଚ୍ଚ ହେଲା ୧୬,୦୦୦ ଟଙ୍କା । ସେଥିରେ ୭,୦୦୦ ଟଙ୍କା କ୍ଷତି ହେଲା । ସରକାରଙ୍କୁ ଲେଖାଲେଖି କଲୁ । ସଙ୍ଗେ ସଙ୍ଗେ ୭,୦୦୦ ଟଙ୍କା ସାହାଯ୍ୟ ମିଳିଲା ।

ଏହାପରେ ବମ୍ବେର **Jhaveri Sisters**ଙ୍କୁ ମଣିପୁରୀ ନୃତ୍ୟ ପରିବେଷଣ କରିବା ପାଇଁ ଡକାଗଲା । କଟକ, ଭୁବନେଶ୍ୱର ଓ ପୁରୀ ଏହିପରି ତିନି ସ୍ଥାନରେ ଏହି ନୃତ୍ୟର ଆୟୋଜନ ହେଲା । ଏହି କାର୍ଯ୍ୟକ୍ରମରେ କେନ୍ଦ୍ରର ୪,୦୦୦ ଟଙ୍କା ଲୋକସାନ ହେଲା । ସରକାରଙ୍କୁ ଲେଖିବାରୁ ସଙ୍ଗେ ସଙ୍ଗେ ଏ ଟଙ୍କା ମଧ୍ୟ ମଞ୍ଜୁର ହେଲା । ଅବଶ୍ୟ ଏହି ସାହାଯ୍ୟ ମଞ୍ଜୁରୀ ପ୍ରାପ୍ତି ସମୟରେ ଗୋଟିଏ ମଜା ଘଟଣା ଘଟିଲା । ବିଭାଗୀୟ ଆସିଷ୍ଟାଣ୍ଟ ସେକ୍ରେଟେରୀ କହିଲେ, **"Mr. Doshi, how can I recommend your case without a good fountain pen ?"** ମୁଁ କହିଲି, **'Yes Sir'** । ତା ଆରଦିନ ଗୋଟିଏ ଭଲ କଲମ ଭେଟି ଦେଲି ଏବଂ ଆମର ଗ୍ରାଣ୍ଟ ମଞ୍ଜୁର ହୋଇଗଲା । ଏହିପରି କେତେକ ଜାଗାରେ କିଛି ଭେଟି ଦେବାକୁ ପଡ଼ିଥିବ, କିନ୍ତୁ ଅଧିକାଂଶ ଜାଗାରେ କେନ୍ଦ୍ର ନାମ ଶୁଣିଲେ ସମସ୍ତେ ସାହାଯ୍ୟ କରିବାକୁ ଆଗଭର ହେଉଥିଲେ । କେଉଁ କେଉଁ କ୍ଷେତ୍ରରେ ସରକାରୀ କର୍ମଚାରୀମାନେ ଲାଞ୍ଚ ନେବାପାଇଁ ଚେଷ୍ଟା କରିଛନ୍ତି, କିନ୍ତୁ ଆମେ କେବେ ଦେଇ ନାହୁଁ । କେତେକ କଳାକାର ବ୍ୟକ୍ତି ବିଶେଷ ମଧ୍ୟ କିଛି ସାହାଯ୍ୟ ପାଇବା ଆଶାରେ କେନ୍ଦ୍ରର କିଛି କିଛି କାର୍ଯ୍ୟ କରିଛନ୍ତି, କିନ୍ତୁ ମୁଁ ସରଳ ଭାବରେ ଏ ସବୁ କଥା ବୁଝିପାରୁ ନଥାଏ ଏବଂ ସେମାନେ ଧାର ସ୍ୱରୂପ ମୋଠାରୁ ଟଙ୍କା ନେଇ ଆଉ

ଅନୁଷ୍ଠାନର ହିସାବ ବିନା ପାରିଶ୍ରମିକରେ ଯାଞ୍ଚ କରୁଛନ୍ତି । କେନ୍ଦ୍ରକୁ ବାରମ୍ବାର ଟଙ୍କା ସାହାଯ୍ୟ ମଧ୍ୟ ଦେଇଛନ୍ତି । ଏମାନେ ସମସ୍ତେ ହୋଇଛନ୍ତି କେନ୍ଦ୍ରର ବାସ୍ତବ ବନ୍ଧୁ ।

କେନ୍ଦ୍ରର ନାନାବିଧ କାର୍ଯ୍ୟକଳାପ ଯୋଗୁ ସବୁ ମହଲରେ ଆମର ପ୍ରବେଶ ଥିଲା । ଏପରି କୌଣସି ବଡ଼ ଅନୁଷ୍ଠାନ ରାଜ୍ୟରେ ନଥିବାରୁ ଆମେ ଯେ କୌଣସି କଥାରେ ସାହାଯ୍ୟ ମାଗିଲେ ପ୍ରତ୍ୟେକ ସରକାରୀ ବିଭାଗରୁ ଆମକୁ ସାହାଯ୍ୟ ମିଳୁଥିଲା ।

ମୋର ମନେ ଅଛି, କବି ମେହେରଙ୍କ ଜନ୍ମଶତାବ୍ଦୀ ଆମେ କେନ୍ଦ୍ର ତରଫରୁ ବିରାଟ ସମାରୋହରେ ପାଳନ କଲାବେଳେ ତାଙ୍କର 'ତପସ୍ୱିନୀ' ଲେଖାରୁ ଏକ ନୃତ୍ୟ ନାଟିକା ଓଡ଼ିଶାରେ ପ୍ରଥମ କରି ଘୂର୍ଣ୍ଣାୟମାନ ରଙ୍ଗମଞ୍ଚ **(Revolving Stage)**ରେ କରିଥିଲୁ । ନିକଟରେ ଦିଲ୍ଲୀରୁ ଫେରିଥିବା ଆମର ଶିକ୍ଷକ ଶ୍ରୀ ମାୟାଧର ରାଉତ ଏହାର ନିର୍ଦ୍ଦେଶନା ଦେଲେ । ପ୍ରାୟ ୧୫୦ ଜଣ କଳାକାର ଏଥିରେ ଭାଗ ନେଇଥିଲେ । କଟକରେ ଲାଗ ଲାଗ ତିନିଦିନ ଧରି ଏହି ନୃତ୍ୟ ନାଟିକା ମଞ୍ଚସ୍ଥ ହେଲା । ଖର୍ଚ୍ଚ ହେଲା ୧୬,୦୦୦ ଟଙ୍କା । ସେଥିରେ ୭,୦୦୦ ଟଙ୍କା କ୍ଷତି ହେଲା । ସରକାରଙ୍କୁ ଲେଖାଲେଖି କଲୁ । ସଙ୍ଗେ ସଙ୍ଗେ ୭,୦୦୦ ଟଙ୍କା ସାହାଯ୍ୟ ମିଳିଲା ।

ଏହାପରେ ବମ୍ବେର **Jhaveri Sisters**ଙ୍କୁ ମଣିପୁରୀ ନୃତ୍ୟ ପରିବେଷଣ କରିବା ପାଇଁ ଡକାଗଲା । କଟକ, ଭୁବନେଶ୍ୱର ଓ ପୁରୀ ଏହିପରି ତିନି ସ୍ଥାନରେ ଏହି ନୃତ୍ୟର ଆୟୋଜନ ହେଲା । ଏହି କାର୍ଯ୍ୟକ୍ରମରେ କେନ୍ଦ୍ରର ୪,୦୦୦ ଟଙ୍କା ଲୋକସାନ ହେଲା । ସରକାରଙ୍କୁ ଲେଖିବାରୁ ସଙ୍ଗେ ସଙ୍ଗେ ଏ ଟଙ୍କା ମଧ୍ୟ ମଞ୍ଜୁର ହେଲା । ଅବଶ୍ୟ ଏହି ସାହାଯ୍ୟ ମଞ୍ଜୁରୀ ପ୍ରାପ୍ତି ସମୟରେ ଗୋଟିଏ ମଜା ଘଟଣା ଘଟିଲା । ବିଭାଗୀୟ ଆସିଷ୍ଟାଣ୍ଟ ସେକ୍ରେଟେରୀ କହିଲେ, **"Mr. Doshi, how can I recommend your case without a good fountain pen ?"** ମୁଁ କହିଲି, **'Yes Sir'** । ତା ଆରଦିନ ଗୋଟିଏ ଭଲ କଲମ ଭେଟି ଦେଲି ଏବଂ ଆମର ଗ୍ରାଣ୍ଟ ମଞ୍ଜୁର ହୋଇଗଲା । ଏହିପରି କେତେକ ଜାଗାରେ କିଛି ଭେଟି ଦେବାକୁ ପଡ଼ିଥିବ, କିନ୍ତୁ ଅଧିକାଂଶ ଜାଗାରେ କେନ୍ଦ୍ର ନାମ ଶୁଣିଲେ ସମସ୍ତେ ସାହାଯ୍ୟ କରିବାକୁ ଆଗଭର ହେଉଥିଲେ । କେଉଁ କେଉଁ କ୍ଷେତ୍ରରେ ସରକାରୀ କର୍ମଚାରୀମାନେ ଲାଞ୍ଚ ନେବାପାଇଁ ଚେଷ୍ଟା କରିଛନ୍ତି, କିନ୍ତୁ ଆମେ କେବେ ଦେଇ ନାହୁଁ । କେତେକ କଳାକାର ବ୍ୟକ୍ତି ବିଶେଷ ମଧ୍ୟ କିଛି ସାହାଯ୍ୟ ପାଇବା ଆଶାରେ କେନ୍ଦ୍ରର କିଛି କିଛି କାର୍ଯ୍ୟ କରିଛନ୍ତି, କିନ୍ତୁ ମୁଁ ସରଳ ଭାବରେ ଏ ସବୁ କଥା ବୁଝିପାରୁ ନଥାଏ ଏବଂ ସେମାନେ ଧାର ସ୍ୱରୂପ ମୋଠାରୁ ଟଙ୍କା ନେଇ ଆଉ

ଫେରନ୍ତି ନାହିଁ । ଫଳରେ ସେମାନଙ୍କ ସହିତ ମତଭେଦ ଘଟେ । ଏବେ ମୁଁ ବୁଝିପାରୁଛି ଯେ ସେ ସମୟରେ ଏପରି ଅଭାବଗ୍ରସ୍ତ କଳାକାରମାନଙ୍କୁ ସେମାନଙ୍କର ମନ କଥା ବୁଝିପାରି କେନ୍ଦ୍ର ତରଫରୁ ସାହାଯ୍ୟ କରିପାରିଥିଲେ ଭଲ ହୋଇଥାନ୍ତା ।

## ପ୍ରକାଶନ ଓ ଗବେଷଣା ବିଭାଗ—

ମୁଖପତ୍ର (Souvenir-Journal)

ଏହି ବିଭାଗ ବିଷୟରେ ବିଶେଷ ଲେଖିବା ପୂର୍ବରୁ ଏଠାରେ ଦୁଇଜଣ ବିଶିଷ୍ଟ ସହକର୍ମୀଙ୍କର ନାମ ଉଲ୍ଲେଖ କରିବା ମୁଁ ଉଚିତ ମନେକରୁଛି । ସେମାନେ ହେଲେ ମୋର ରାଜନୈତିକ ଦୁଇଜଣ ବନ୍ଧୁ ଶ୍ରୀ ଉପେନ୍ଦ୍ର ମିଶ୍ର ଓ ଶ୍ରୀ ନୀଳମାଧବ ବୋଷ । ଉପେନ୍ଦ୍ର ବାବୁ ସେତେବେଳେ କଲିକତାରୁ ପାଠପଢ଼ି ଫେରି ଭୁବନେଶ୍ୱରରେ ପୂର୍ତ୍ତି ବିଭାଗରେ ଚାକିରି କରୁଥିଲେ ଏବଂ କଟକ ଛାଡ଼ି ଭୁବନେଶ୍ୱରରେ ରହୁଥିଲେ । ସେ ମହାଶୟ ପ୍ରତି ରବିବାର ଦିନ କଟକ ଆସନ୍ତି ଏବଂ ନିୟମିତ ଭାବେ କଟକଚଣ୍ଡୀ ଦର୍ଶନ କରି ମୋ ପାଖକୁ ଚାଲିଆସନ୍ତି । କେନ୍ଦ୍ରର ସବୁ ପତ୍ରାଳାପ ତାଙ୍କ ଜରିଅାରେ ହୁଏ । ତାଙ୍କର ଇଂରାଜୀ ଲେଖାର ଶୈଳୀ ଏତେ ସୁନ୍ଦର ଓ ସାବଲୀଳ ଯେ ସେ ପତ୍ରମାନ ପଢ଼ି ସମସ୍ତେ ଖୁସି ହୁଅନ୍ତି । ସମସ୍ତେ ଭାବନ୍ତି ଯେ ଏସବୁ ପତ୍ର ମୁଁ ଲେଖୁଛି ଏବଂ ସେଥିପାଇଁ ମୋତେ ଅନେକ ଲୋକ ଭୁଲ ଭାବରେ ପ୍ରଶଂସା କରନ୍ତି । ମୋର ମନେ ଅଛି ଯେ ଏପରି ଗୋଟିଏ ପତ୍ରର ଭାଷାରେ ପ୍ରଭାବିତ ହୋଇ ଶ୍ରୀ ବୀରେନ୍ ମିତ୍ର ମୋତେ ଅନେକ ସାହାଯ୍ୟ କରିଥିଲେ । ଉପେନ୍ଦ୍ର ବାବୁଙ୍କ ପରି ନିସ୍ୱାର୍ଥ ଓ ନିଷ୍ଠାପର କର୍ମୀ ମୁଁ ଆଜଯାଏ ଦେଖିନାହିଁ । ତାଙ୍କପରି ବନ୍ଧୁ ମଧ୍ୟ ମିଳିବା ଏ ଯୁଗରେ କଷ୍ଟକର ।

ସେହିପରି ଶ୍ରୀ ନୀଳମାଧବବାବୁ ମଧ୍ୟ ମୋତେ ଲେଖାଲେଖିରେ ସାହାଯ୍ୟ କରନ୍ତି । କେନ୍ଦ୍ରର ପାଠ୍ୟକ୍ରମ, ନୃତ୍ୟ ସଙ୍ଗୀତର ତଥ୍ୟମୂଳକ ଶିକ୍ଷା ପ୍ରଦାନ, ଗବେଷଣାମୂଳକ ଲେଖା, ନୃତ୍ୟ ନାଟିକା ରଚନା ଏପରିକି ମହାବିଦ୍ୟାଳୟର ନାମକରଣ ଓ ପରିଚାଳନାରେ ତାଙ୍କର ଅବଦାନ ଅବିସ୍ମରଣୀୟ ।

ଏହି ଦୁଇ ବନ୍ଧୁ ମିଶି ଦିନେ କେନ୍ଦ୍ରର ଏକ ସ୍ମରଣିକା ପ୍ରକାଶ କରିବାର ସିଦ୍ଧାନ୍ତ କଲେ । ତେଣୁ ୧୯୫୭ ମସିହାରେ ପ୍ରଥମ କରି କେନ୍ଦ୍ରଦ୍ୱାରା ଗୋଟିଏ ସୋଭେନିୟର ପ୍ରକାଶ ପାଇଲା । ଏପରି କେନ୍ଦ୍ରର ମୁଖପତ୍ର ଭାବରେ ପ୍ରତିବର୍ଷ ବାର୍ଷିକ ଉତ୍ସବରେ ୧୯୭୪ ପର୍ଯ୍ୟନ୍ତ ଅାସି ପ୍ରକାଶ କଲା । ବହୁ ଗବେଷଣାମୂଳକ ଲେଖା ସମ୍ବଳିତ ବହୁ ପ୍ରବନ୍ଧ ସେଥିରେ ସନ୍ନିବିଷ୍ଟ ହେଲା । ୧୯୫୮ ମସିହାରେ ଓଡ଼ିଶୀ ନୃତ୍ୟଗୀତ ଉପରେ ଗୋଟିଏ ବିଶିଷ୍ଟ ସଂଖ୍ୟା ମଧ୍ୟ ପ୍ରକାଶ ପାଇଥିଲା ।

ପରେ କେତେକ ବର୍ଷ ଗୃହ କଳହ ଯୋଗୁଁ ଏ ପ୍ରକାଶନ ବନ୍ଦ ରହିଲା । କିନ୍ତୁ ୧୯୭୧ ଓ ୧୯୭୨ ମସିହାରେ ପୁଣି ଏହାର ବାର୍ଷିକ ସଂଖ୍ୟା ଆମ୍ଭ ପ୍ରକାଶକଲୁ ।

ନୀଳମାଧବବାବୁ ଓ ଦୟାନିଧିବାବୁ ମିଶି ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତର ଚାରି ବର୍ଷିଆ ପାଠ୍ୟକ୍ରମ ମଧ୍ୟ ପ୍ରକାଶ କରିଥିଲେ । ବହୁ ଗବେଷଣା ପରେ ଶ୍ରୀ କାଳୀଚରଣ ପଟ୍ଟନାୟକ, କେଳୁବାବୁ, ଭୁବନେଶ୍ୱରବାବୁ ଇତ୍ୟାଦି ବନ୍ଧୁଙ୍କ ସାହାଯ୍ୟରେ ଏବେ ପୁଣି ଓଡ଼ିଶୀ ନୃତ୍ୟର ଗୋଟିଏ ଆଠ ବର୍ଷିଆ ପାଠ୍ୟକ୍ରମ ପ୍ରକାଶ କରାଯାଇଛି ।

ଦିଲ୍ଲୀ ସଙ୍ଗୀତ ନାଟକ ଏକାଡେମୀଙ୍କ ପାଖକୁ ବହୁ ଲେଖାଲେଖି ପରେ ଓଡ଼ିଶାର ପଲ୍ଲୀ ଓ ନୃତ୍ୟଗୀତର ଗବେଷଣା ପାଇଁ କିଛି ସାହାଯ୍ୟ ପାଇଥିଲୁ । ସେହି ସମୟରେ ଶ୍ରୀ ଧୀରେନ୍ଦ୍ର ନାଥ ପଟ୍ଟନାୟକ କିଛି ଦିନ ପାଇଁ କେନ୍ଦ୍ରରେ ଯୋଗଦେଲେ । ୧୯୫୮–୫୯ର ଆର୍ଥିକ ବର୍ଷରେ ପ୍ରଥମ କରି ସମ୍ବଲପୁର ଜିଲ୍ଲାରେ ଗବେଷଣା କରିବା ପାଇଁ ତାଙ୍କ ନେତୃତ୍ୱରେ ମାୟାଧରବାବୁ, ଦୟାନିଧିବାବୁ, ରାଖାଲବାବୁ ଇତ୍ୟାଦି କେତେକ ଜଣ ଗଲେ । ପରେ ସୁନ୍ଦରଗଡ଼ ଜିଲ୍ଲାରେ ଗବେଷଣା କାର୍ଯ୍ୟ ମଧ୍ୟ କରାଗଲା । ପ୍ରତ୍ୟେକ ଜିଲ୍ଲାରେ ଗବେଷଣା କରାଯାଇ ଗୋଟିଏ ଗୋଟିଏ ପୁସ୍ତିକା ଆକାରରେ ପ୍ରକାଶିତ ହେଲା । ଏହିପରି ଛଅବର୍ଷ ପର୍ଯ୍ୟନ୍ତ ଯଥାକ୍ରମେ ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗୀର, ଫୁଲବାଣୀ, କୋରାପୁଟ ଓ କଳାହାଣ୍ଡିର ପୁସ୍ତିକା ପ୍ରକାଶ ପାଇଲା ।

ଏହିପରି ଗବେଷଣାରେ ସେଠାର ଜିଲ୍ଲାପାଳ, ଲୋକସମ୍ପର୍କ ବିଭାଗ ଓ ସ୍ଥାନୀୟ ବ୍ଲକ ଉନ୍ନୟନ ଅଫିସ ଏପରିକି ସ୍ଥାନୀୟ ବ୍ୟକ୍ତି ବିଶେଷମାନଙ୍କର ଅକୁଣ୍ଠ ସାହାଯ୍ୟ ମଧ୍ୟ ଆମକୁ ମିଳୁଥିଲା । ଦୂର ଗ୍ରାମମାନଙ୍କରେ ବାସ କରୁଥିବା ଆଦିବାସୀ ମାନଙ୍କର ନୃତ୍ୟ ଗବେଷଣା ପାଇଁ ବହୁ ଦିନ ଧରି ଆମ୍ଭମାନଙ୍କୁ ଦୂର ସ୍ଥାନମାନଙ୍କରେ ରହିବାକୁ ପଡ଼ୁଥିଲା । ବେଳେବେଳେ ସ୍ଥାନୀୟ ଆଦିବାସୀମାନେ ଆମ୍ଭମାନଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖିବାରୁ ଆମେ ନାନା ଅସୁବିଧାର ସମ୍ମୁଖୀନ ହେଉଥିଲୁ । ଅନେକ ସମୟରେ ଆଦିବାସୀମାନଙ୍କୁ ଟଙ୍କାର ପ୍ରଲୋଭନ ଦେଖାଇ ସହରକୁ ଅଣାଯାଉଥିଲା । ଏପରି ଅବସ୍ଥାରେ ଆମ୍ଭମାନଙ୍କୁ ଯଦି ସରକାରୀ କର୍ମଚାରୀମାନଙ୍କର ସକ୍ରିୟ ସହଯୋଗ ମିଳିନଥାନ୍ତା ତାହାହେଲେ ଆମେ ବୋଧହୁଏ କିଛି କରିପାରି ନ ଥାଆନ୍ତୁ ।

ଆମର ତୃତୀୟ ବର୍ଷର ଗବେଷଣା ପାଇଁ ବଲାଙ୍ଗୀରକୁ ବଛାଗଲା ଏବଂ ସେତେବେଳର ସେଠାର ଜିଲ୍ଲାପାଳ ଶ୍ରୀ ରବୀନ୍ଦ୍ରନାଥ ଦାସ ଆମ୍ଭମାନଙ୍କୁ ବହୁତ ସାହାଯ୍ୟ କରିଥିଲେ । ଶ୍ରୀ ନୀଳମାଧବବାବୁଙ୍କ ନେତୃତ୍ୱରେ ଏପରି ଦଳ ସେଠାକୁ ଯାଇଥିଲା ।

ଚତୁର୍ଥ ଦଳରେ ମୁଁ ଜନେ ସଙ୍ଗରେ ଯାଇଥିଲି ଏବଂ ଫୁଲବାଣୀ ଜିଲ୍ଲାର ଅତି ନିଦାଘ ଜଙ୍ଗଲ ଜାଗାରେ ଆମ୍ଭମାନଙ୍କୁ ଯିବାକୁ ପଡ଼ିଥିଲା । ସେତେବେଳେ ସେଠାର ଲୋକସମ୍ପର୍କ ଅଫିସର ଥିଲେ ଶ୍ରୀ ବିଶ୍ୱନାଥ ସାହୁ ଏବଂ ଉନ୍ନୟନ ଅଫିସର ଥିଲେ ଶ୍ରୀ ସୁଧାଂଶୁ ମୋହନ ରାଉତରାୟ । ସେତେବେଳେ ଟିକାବାଲି ଅଞ୍ଚଳରେ ନୂଆକରି ବ୍ଲକ ଉନ୍ନୟନ କାର୍ଯ୍ୟ ଆରମ୍ଭ ହୋଇଥାଏ ଏବଂ ସେଠାର ଆଦିବାସୀମାନେ ଅତି ଅନୁନ୍ନତ ଅବସ୍ଥାରେ ଥିଲେ । ପାହାଡ଼ର ଗୁମ୍ଫାମାନଙ୍କରେ ସେମାନେ ରହନ୍ତି । ପୁରୁଷମାନେ ଏପରିକି ସ୍ତ୍ରୀ ଲୋକମାନେ ଖୁବ୍ ଅଳ୍ପ ବସ୍ତ୍ର ବ୍ୟବହାର କରୁଥାଆନ୍ତି । ସହର ଲୋକଙ୍କ ପାଖକୁ ଆସିବାକୁ ଡରୁଥାଆନ୍ତି । ସେମାନଙ୍କ ପାଇଁ ସେତେବେଳେ ବ୍ଲକ ଜରିଆରେ କେତେକ ପଲ୍ଲୀଗ୍ରାମ ତିଆରି କରାଯାଇଥାଏ । ସେଠାରେ ସେମାନଙ୍କୁ ଆସି ରହିବା ପାଇଁ ପରାମର୍ଶ ଦିଆଯାଉଥିଲେ ମଧ୍ୟ ସେମାନେ କିଛି ଦିନ ପରେ ପୁଣି ପାହାଡ଼ କୁଡ଼ିଆକୁ ପଳାଇ ଯାଉଥାଆନ୍ତି । ପାହାଡ଼ର ପ୍ରାୟ ଚାରି ହଜାର ଫୁଟ ଦେଇ ଗୋଟିଏ କଚ୍ଚା ରାସ୍ତା ରାଉରକେଲା ଯିବାପାଇଁ ତିଆରି ହେଉଥାଏ । ଆମ୍ଭ-ମାନଙ୍କୁ ଜିପରେ ସେଠାକୁ ନିଆଗଲା । ମୋର ମନେ ଅଛି, ଗୋଟିଏ ଆଦିବାସୀ ଝିଅ ଜଙ୍ଗଲରେ କାମ କରୁଥିଲା । ସେ ଜିପ୍‌ର ଶବ୍ଦ ଶୁଣି ଆଗେ ଆଗେ ପଳାଉଥାଏ ଓ ଆମର ଜିପ୍ ପଛେ ପଛେ ଯାଉଥାଏ । ଏପରି ସେମାନଙ୍କର ସେତେବେଳେ ଭୟଥାଏ । ଏ ଜିପ୍‌ରେ ମାୟାଧରବାବୁ, ରାଖାଲବାବୁ, ବମ୍ବେରୁ ଆସିଥିବା ମୋର ଜଣେ ଫଟୋଗ୍ରାଫର ବନ୍ଧୁ ଶ୍ରୀ ନରେନ୍ ଧୋଲକିଆ, ଶ୍ରୀ ବିଶ୍ୱନାଥ ସାହୁ ପ୍ରଭୃତି ବସିଥିଲୁ । ଗୋଟିଏ ଉଚ୍ଚ ଜାଗା ଉପରେ ଚଢ଼ୁ ଚଢ଼ୁ ଜିପ୍‌ର ବ୍ରେକ୍ କାମ କଲାନାହିଁ । ଫଳରେ ଗାଡ଼ି ପଛକୁ ଗଡ଼ିବାକୁ ଲାଗିଲା । ଡ୍ରାଇଭର ଅତି କୌଶଳ କ୍ରମେ ଟିକିଏ ବାଙ୍କେଇ ଦେବାରୁ ତାହା ପାହାଡ଼ର ଗୋଟିଏ ବଡ଼ ପଥର ସହିତ ଧକା ଖାଇ ଅଟକିଗଲା; ନଚେତ୍ ଆମେ ସମସ୍ତେ ଦୁଇ ତିନ ହଜାର ଫୁଟ ତଳକୁ ଖସି ପଡ଼ିଥାଆନ୍ତୁ ।

ସେଦିନ ପ୍ରାୟ ସନ୍ଧ୍ୟା ସୁଦ୍ଧା ଆମେ ଗୋଟିଏ ଆଦିବାସୀ ଗାଁରେ ପହଞ୍ଚିଲୁ । ରାତିରେ ସେମାନଙ୍କର ନୃତ୍ୟ ଗୀତର ଆୟୋଜନ ହେଲା । କ'ଣ କହିବି ! ସେମାନଙ୍କର ସମବେତ କଣ୍ଠରେ ସଙ୍ଗୀତ ଓ ନୃତ୍ୟ ଦେଖିଲେ ଯେ କେହି ବିସ୍ମିତ ହୋଇ ପଡ଼ିବେ । ପାଶ୍ଚାତ୍ୟ ସଙ୍ଗୀତ ପରି ସମବେତ ସ୍ୱରରେ ହଜାର ହଜାର ବର୍ଷ ଧରି ଜନବସତିର ଦୂରରେ ରହିଥିବା ଏହି ଆଦିବାସୀମାନଙ୍କୁ ଏସବୁ ଶିଖାଇଲା କିଏ ? ଶାନ୍ତିନିକେତନ ପରି କଳାକୃତିରେ ଖଚିତ ଗୋଟିଏ ବାଉଁଶ ନଳରେ ସେମାନେ ନାସ ରଖନ୍ତି ଏବଂ ଅତିଥି ସତ୍କାର ସମୟରେ ଇଂରେଜମାନେ ଯେପରି ମଦ୍ୟପାନ ସମୟରେ ଦୁଇ ଗ୍ଲାସକୁ ସ୍ପର୍ଶ କରନ୍ତି ସେହିପରି ସେମାନେ ମଧ୍ୟ ଏହି ଦୁଇ ବାଉଁଶ ନଳକୁ ପ୍ରଥମେ ସ୍ପର୍ଶ କରାଇଲା ପରେ ନାସ ଶୁଙ୍ଘନ୍ତି । ଏ ପାଶ୍ଚାତ୍ୟ ଚଳ-

ପ୍ରଚଳନର ବିଧି ସେମାନଙ୍କୁ ଶିଖାଇଲି କିଏ ? ଏହିପରି ଜଙ୍ଗଲରେ ବୁଲୁଥିବା ସମୟରେ ଏକ ସ୍ଥାନରେ ଏକ ବିରାଟ କଦଳୀ ବଣ ଦେଖିଲୁ । ବିରାଟ ଆକାରର କଦଳୀ ଫୁଲୁଥାଏ । ପଚାରିବାରୁ ଜଣାଗଲା ଏହାକୁ ମଣିଷ ଖାଆନ୍ତି ନାହିଁ । କେବଳ ହାତୀ ଖାଆନ୍ତି । ଏଠାରେ ରାମାୟଣ ବର୍ଣ୍ଣିତ ବାଲୀ ରାଜାର ରାଜ୍ୟଥିଲା ଓ ରାମାୟଣ ଲିଖିତ କଦଳୀବଣ ଏହିଠାରେ ଥିଲା । ବାଲୀ ରାଜା ନାମିତ ଟିକାବାଲି ଓ ବାଲିଗୁଡ଼ା ନାମକ ଶ୍ରେଷ୍ଠ ସହର ସବୁ ଆଜି ସୁଦ୍ଧା ଏଠାରେ ବିଦ୍ୟମାନ ।

ଏହିପରି କଳାହାଣ୍ଡି ଓ କୋରାପୁଟର ଗବେଷଣା କାର୍ଯ୍ୟରେ ଯୋଗ ଦେଇଥିବା ମୋର ବନ୍ଧୁ ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି ଏବଂ ସେତେବେଳେ ଫୁଲବାଣୀରୁ ବଦଳି ହୋଇଥିବା କଳାହାଣ୍ଡିର ଲୋକ ସମ୍ପର୍କ ଅଫିସର ଶ୍ରୀ ବିଶ୍ୱନାଥ ସାହୁ ସେହି ଜିଲ୍ଲାମାନଙ୍କ ସମ୍ପର୍କରେ ଅନେକ ନୂତନ ତଥ୍ୟ ସଂଗ୍ରହ କଲେ । ସେଠାର ଆଦିବାସୀ ନୃତ୍ୟଗୀତ ଛଡ଼ା ସେମାନଙ୍କର ଦୈନନ୍ଦିନ ଜୀବନର ବହୁ ବିଚିତ୍ର ଘଟଣା ଦେଖିବାକୁ ପାଇଲେ ।

ଏହି ଦଳରେ ଶ୍ରୀ କେଳୁଚରଣ ମହାପାତ୍ର, ଶ୍ରୀ ରଘୁନାଥ ଦତ୍ତ ଓ ଶ୍ରୀ ରଘୁନାଥ ନନ୍ଦ ମଧ୍ୟ ଯୋଗ ଦେଇଥିଲେ । ଗୋଟିଏ କିମ୍ବଦନ୍ତୀରୁ ଜଣାଯାଏ ଯେ ସୀତା ମାତା ଦଣ୍ଡକାରଣ୍ୟ ଅବସ୍ଥାନ କାଳରେ ନଦୀ ତୀରରେ ଉଲଗ୍ନ ହୋଇ ସ୍ନାନ କରିବା ସମୟରେ ଆଦିବାସୀ ସ୍ତ୍ରୀମାନେ ପରିହାସ କରିବାରୁ ସେ ଅଭିଶାପ ଦେଇଥିଲେ, "ତୁମ୍ଭେମାନେ ଏହିପରି ଉଲଗ୍ନ ହୋଇ ରହିବ ।" ଅଦ୍ୟାବଧି ଏକ ଆଦିବାସୀ ଗୋଷ୍ଠୀ ପ୍ରାୟ ଉଲଗ୍ନ ଅବସ୍ଥାରେ ରହନ୍ତି ।

କେନ୍ଦ୍ର ତରଫରୁ ଛଅଗୋଟି ଜିଲ୍ଲାରେ ଗବେଷଣା ହୋଇ ଛଅଗୋଟି ରିପୋର୍ଟ ପ୍ରକାଶ ପାଇଛି । । ସେଥିରେ ଏହିପରି ବହୁ ତଥ୍ୟର ଉଲ୍ଲେଖ ରହିଛି ।

ଆମର ଶିକ୍ଷକମାନେ ଆଦିବାସୀ ସଙ୍ଗୀତ ଓ ନୃତ୍ୟ ସେଠାରେ ଶୁଣିଲେ, ଦେଖିଲେ, ଶିଖିଲେ ଓ କେନ୍ଦ୍ରର ଛାତ୍ରଛାତ୍ରୀମାନଙ୍କୁ ଶିଖାଇଲେ । ତା' ମଧ୍ୟରେ 'ପରଜା', 'ରସୁଲକେଳୀ', 'ଗଦବା', 'ଚଢ଼େୟା', 'କେଳାକେଲୁଣି', 'ଘୁମୁରା' ନୃତ୍ୟ ଅନ୍ୟତମ । ଖୋର୍ଦ୍ଧା ଅଞ୍ଚଳର 'ପାଇକ' ଓ ପୁରୀର 'ନାଗା ନାଚ' ମଧ୍ୟ କେନ୍ଦ୍ରର ଛାତ୍ରଛାତ୍ରୀମାନେ ଶିଖିଲେ । ଏହିପରି ଏସବୁ ଲୋକନୃତ୍ୟ କଳା ବିକାଶ କେନ୍ଦ୍ର ଦ୍ୱାରା ବହୁ ପରିମାଣରେ ପ୍ରସିଦ୍ଧି ଲାଭକଲା । ପରେ ପରେ ରାଜ୍ୟ ଓ ଭାରତ ସରକାରଙ୍କର ମଧ୍ୟ ଦୃଷ୍ଟି ଆକୃଷ୍ଟ ହେଲା ଓ ବହୁ ଲୋକେ ସେ ସବୁ ଅଞ୍ଚଳରେ ନୃତ୍ୟ ଗୀତର ସନ୍ଧାନ ନେଲେ । ଏହିସବୁ ନୃତ୍ୟ ବହୁ ସମୟ ଧରି ଏପରିକି ରାତିସାରା ମଧ୍ୟ ହୁଏ । ଏହାକୁ ପୁଣି ସଂକ୍ଷିପ୍ତ କରି ପରିବେଷଣ କରାଯାଉଥାଏ । ମୁଁ ଆଗରୁ

ଉଲ୍ଲେଖ କରନ୍ତି ଯେ ପ୍ରଥମାବସ୍ଥାରେ ଓଡ଼ଶୀ ନୃତ୍ୟ ଖୁବ୍ ବେଶି ହେଲେ ଦଶ ମିନଟ୍ ପର୍ଯ୍ୟନ୍ତ ହେଉଥିଲା । ସୁତରାଂ ତତ୍‌ସହିତ ଏହି ସଂକ୍ଷିପ୍ତ ଲୋକନୃତ୍ୟ ପରିବେଷଣ କରି ଆମ୍ଭେମାନେ ସୁନାମ ଅର୍ଜି ପାରିଥିଲୁ ।

ନରେନ୍ଦ୍ରପୁର କଳାବିକାଶ କେନ୍ଦ୍ରର ଶ୍ରୀ ଭଗବାନ ସାହୁଙ୍କ ଦ୍ୱାରା ପରିଚାଳିତ ଲୋକଦଳଙ୍କୁ ପ୍ରଥମ କରି ୧୯୬୪ରେ ଆମ୍ଭେମାନେ ବମ୍ବେକୁ ନେଲୁ । ତା'ପରେ ଶ୍ରୀ ସାହୁଙ୍କ ଅଧିବସାୟରେ ତାଙ୍କ ଦଳଦ୍ୱାରା ପରିବେଷିତ 'ରଣପା', 'ପାଇକ', ଓ 'ଘୁମୁରା' ନୃତ୍ୟ ପ୍ରଭୃତି ଏତେ ପ୍ରସିଦ୍ଧି ଲାଭ କଲା ଯେ ଆଜି ସାରା ଭାରତ ବର୍ଷରେ ସେମାନେ ଗୋଟିଏ ଉଚ୍ଚକୋଟୀର ଲୋକନୃତ୍ୟଦଳ ହିସାବରେ ନାମ ଅର୍ଜନ କରିଛନ୍ତି । ଗତ ବର୍ଷ ଆମର ଦକ୍ଷିଣ ଭ୍ରମଣ ସମୟରେ ଆମ ସହିତ ସେମାନେ ଯାଇଥିଲେ ଓ ସେ ସ୍ଥାନର ଖବର କାଗଜ ସବୁ ଶ୍ରୀ ସାହୁ ଓ ତାଙ୍କ ଦଳ ବିଷୟରେ ବିପୁଳ ପ୍ରଶଂସା ଉଲ୍ଲେଖ କରିଥିଲେ । ଶ୍ରୀ ସାହୁ ଏକାଡ଼େମୀ ଦ୍ୱାରା ପୁରସ୍କୃତ ।

ଆମର ଗବେଷଣା ବିଭାଗ **International Folk Music Council of London**ଙ୍କ ସହିତ ବହୁ ବର୍ଷ ଧରି ସଶ୍ଳିଷ୍ଟ ହୋଇ ରହିଥିଲା ।

ଏହିପରି ଭାବରେ ୧୯୫୬ରୁ ୧୯୬୬ ଏହି ଦଶବର୍ଷ ଭିତରେ ସଙ୍ଗୀତ ନୃତ୍ୟ ନାଟକର ଉନ୍ନତି, ତାହାର ଦେଶ ବିଦେଶରେ ପ୍ରଚାର ଓ ପ୍ରସାରରେ କଳା ବିକାଶ କେନ୍ଦ୍ର ଅଗ୍ରଗାମୀ ହେଲା । କେନ୍ଦ୍ର ତରଫରୁ ବହୁବାର ଆଲୋଚନା ଚକ୍ରର ମଧ୍ୟ ଆୟୋଜନ ହେଉଥାଏ । ଏହିପରି ଆଲୋଚନାରେ କଲିକତାର 'ନୃତ୍ୟ ଭାରତୀ'ର ଅଧ୍ୟକ୍ଷ ଶ୍ରୀ ପ୍ରହ୍ଲାଦ ଦାସ ଭାରତୀୟ ନୃତ୍ୟ ସମ୍ବନ୍ଧରେ ଓ ଶ୍ରୀ ମୋହନ ଖୋକର ଭାରତନାଟ୍ୟମ୍ ନୃତ୍ୟ ବିଷୟରେ ଆଲୋଚନା କରିଥିଲେ । ନୃତ୍ୟ ନାଟକ ସଙ୍ଗୀତ ଛଡ଼ା ଇଂରାଜି ବଙ୍ଗଳା ପ୍ରଭୃତି ଭାଷାରୁ କାବ୍ୟ, କବିତା ସମ୍ବନ୍ଧରେ ମଧ୍ୟ ଆଲୋଚନାର ଆୟୋଜନ କରାଯାଉଥିଲା ଏବଂ ସେହି ସବୁ ବିଷୟର ବହୁ ବିଶେଷଜ୍ଞ ମାନେ ଏଥିରେ ଯୋଗ ଦେଉଥିଲେ ।

ମୁଁ ଏହା ଆଗରୁ କହିଛି ଯେ ଆମର ପ୍ରତ୍ୟେକ ବାର୍ଷିକ ଉତ୍ସବ ତତ୍କାଳୀନ ରାଜ୍ୟପାଳମାନେ ଉଦ୍‌ଘାଟନ କରୁଥିଲେ । ଏହିପରି ମୁଖ୍ୟ ଅତିଥି ଭାବରେ ମଧ୍ୟ ମାନ୍ଦ୍ରାଜର ଶ୍ରୀମତୀ ରୁକ୍ମିଣୀ ଅରୁଣ୍ଡେଲ୍, ବେଙ୍ଗଲ୍ ମ୍ୟୁଜିକ ଏକାଡ଼େମୀର ଶ୍ରୀ ବୀରେନ୍ଦ୍ର କିଶୋର ରାୟ ଚୌଧୁରୀ, ଶାନ୍ତିନିକେତନର ଶ୍ରୀ ରବୀନ୍ଦ୍ର ଲାଲ ରାୟ, କଲିକତା ବହୁରୂପୀର ମୁଖ୍ୟ ଶ୍ରୀ ଶମ୍ଭୁ ମିତ୍ର, ପ୍ରଫେସର ହୁମାୟୁନ କବୀର, ବିଶିଷ୍ଟ ସରୋଦ ବାଦକ କଲିକତାର ଏ. ଟି. କାନନ ଓ ଶ୍ରୀମତୀ କାନନ, ଶ୍ରୀ ରାଧିକା ମୋହନ ମୈତ୍ର, ଶ୍ରୀମତୀ କମଳା ଦେବୀ ଚଟ୍ଟୋପାଧ୍ୟାୟ, ଶ୍ରୀ ଜୟଦେବ ଠାକୁରଙ୍କ ପରି ବହୁ ନାମଜାଦା ବ୍ୟକ୍ତି ଯୋଗ ଦେଉଥିଲେ । ପଣ୍ଡିତ ଡ଼. ଭି. ପାଲୁସକାର, ପଣ୍ଡିତ

ବିନାୟକ ରାଓ ପଟ୍ଟବର୍ଦ୍ଧନ, ସୌମ୍ୟେନ୍ଦ୍ରନାଥ ଠାକୁର, ଶ୍ରୀ ସମର ଚାଟାର୍ଜୀ
ବିଶିଷ୍ଟ ଚିତ୍ରତାରକା ଶ୍ରୀମତୀ ଅରୁନ୍ଧତୀ ମୁଖାର୍ଜୀ ଓ ତାଙ୍କର ସ୍ୱାମୀ ଶ୍ରୀ ପ୍ରଭାତ ମୁଖାର୍ଜୀ,
କଥକ ନୃତ୍ୟ ଜଗତରେ ସୁଖ୍ୟାତି ପ୍ରାପ୍ତ ଶ୍ରୀ ଗୋପୀକୃଷ୍ଣ, ଶ୍ରୀମତୀ ରୋଶନ କୁମାରୀଙ୍କ
ପରି ବହୁ ବିଶିଷ୍ଟ ପଣ୍ଡିତମାନେ ଏବଂ ଓଡ଼ିଶା ଗସ୍ତରେ ଆସୁଥିବା ଦେଶ ବିଦେଶର
ଅନେକ କଳାକାର ଓ ବିଶିଷ୍ଟ ବ୍ୟକ୍ତିମାନେ କେନ୍ଦ୍ର ପରିଦର୍ଶନରେ ଆସି ଅନୁଷ୍ଠାନର
ଶୁଭକାମନା କରିଛନ୍ତି । ଆନ୍ତର୍ଜାତୀୟ ନାଟ୍ୟ ବିବେଚକ ଶ୍ରୀ ଆଲେକ୍ଜାଣ୍ଡର
ଆଲମୋର, ଶ୍ରୀମତୀ ରୋଜମଣ୍ଡ ଗିଲଡ଼ାର ଓ ବିଶିଷ୍ଟ ନୃତ୍ୟ ବିବେଚକ ଶ୍ରୀ ଚାର୍ଲସ
ଫାବ୍ରି ଏମାନଙ୍କ ମଧ୍ୟରେ ଅନ୍ୟତମ । ଏହିପରି ଶ୍ରେଷ୍ଠ ସଙ୍ଗୀତଜ୍ଞ ଶ୍ରୀ ରତନ ଝଙ୍କାର,
ବଙ୍ଗଳା ନାଟ୍ୟ ଜଗତରେ ଖ୍ୟାତିପ୍ରାପ୍ତ ଶ୍ରୀ ଅହୀନ୍ଦ୍ର ଚୌଧୁରୀ, ଐତିହାସିକ ଶ୍ରୀ କାଳିଦାସ
ନାଗଙ୍କ ପରି ବହୁ ଲୋକ ନିମନ୍ତ୍ରଣ ଗ୍ରହଣ କରି ସୁଦ୍ଧା ଶେଷ ମୁହୂର୍ତ୍ତରେ ଅସୁସ୍ଥତା
ହେତୁ ଆସି ପାରିଲେ ନାହିଁ । ସେମାନେ ଏବେ ଇହଜଗତରେ ନାହାନ୍ତି । ପୁରାତନ
ଯୁଗର ବିଶିଷ୍ଟ ଅଭିନେତ୍ରୀ ଶ୍ରୀମତୀ ଦେବିକାରାଣୀ ବହୁବାର କେନ୍ଦ୍ର ପରିଦର୍ଶନରେ
ଆସିବା ପାଇଁ ଇଚ୍ଛା ପ୍ରକାଶ କରି ମଧ୍ୟ ଆଜି ପର୍ଯ୍ୟନ୍ତ ଆସିପାରି ନାହାନ୍ତି ।

ଅନୁଷ୍ଠାନ ତରଫରୁ ବହୁଧରଣର ନୃତ୍ୟନାଟିକା ପ୍ରଯୋଜନା କରାଗଲା ।
ତା ମଧ୍ୟରେ ୰ ଗଙ୍ଗାଧର ମେହେରଙ୍କ 'ତପସ୍ୱିନୀ' ଅନ୍ୟତମ । କଟକ ଛଡ଼ା
ଭୁବନେଶ୍ୱର ଓ ବରଗଡ଼ରେ ମଧ୍ୟ ବହୁ ବ୍ୟୟରେ ଏହି ନୃତ୍ୟ ନାଟିକା ଅସ୍ଥାୟୀ
**Revolving Stage**ରେ ପରିବେଷିତ ହୋଇଥିଲା । ଓଡ଼ିଶାର ସରକାରୀ ଓ
ବେସରକାରୀ ସବୁ ଅନୁଷ୍ଠାନମାନଙ୍କ ନିମନ୍ତ୍ରଣ କେନ୍ଦ୍ର ପାଇଛି ଏବଂ ଓଡ଼ିଶାର ପ୍ରାୟ
ସବୁ ଅଞ୍ଚଳରେ ଏପରିକି ଦୂର ପଲ୍ଲୀମାନଙ୍କରେ ମଧ୍ୟ ବିଚିତ୍ରାନୁଷ୍ଠାନ ପରିବେଷଣ
କରିଛି । ଆମ ରାଜ୍ୟ ବାହାରେ କଲିକତା, ବମ୍ବେ, ଦିଲ୍ଲୀ, ମାନ୍ଦ୍ରାଜ, ବାଙ୍ଗାଲୋର,
ମହୀଶୂର, ଟାଟାନଗର, ଶିଲଂ ଏପରିକି ସୀମାନ୍ତ ଅଞ୍ଚଳରେ ମଧ୍ୟ କଳା ବିକାଶ କେନ୍ଦ୍ରର
କଳାକାରମାନେ ନୃତ୍ୟଗୀତ ପରିବେଷଣ କରିବାର ସୁଯୋଗ ପାଇଛନ୍ତି । ଅନୁଷ୍ଠାନର
ଛାତ୍ରୀ ସଂଯୁକ୍ତା, କୁଙ୍କୁମ, କୁକୁମିନା, ସବିତା ପରି କେତେକ ନୃତ୍ୟ ବିଶାରଦା
ଭାରତ ବାହାରେ ବହୁ ସ୍ଥାନରେ ନୃତ୍ୟ ପରିବେଷଣ କଲେ । ୧୯୬୦ରେ ଆୟୋଜିତ
ଦିଲ୍ଲୀର ଆନ୍ତର୍ଜାତୀୟ କୃଷି ମେଳାରେ କେନ୍ଦ୍ରର ୪୦ ଜଣ କଳାକାରମାନଙ୍କୁ ନେଇ
ମୁଁ ଏକମାସ ପର୍ଯ୍ୟନ୍ତ ସେଠାରେ ରହିଥିଲି ଏବଂ ଅନେକଗୁଡ଼ିଏ କାର୍ଯ୍ୟକ୍ରମର
ଆୟୋଜନ ହୋଇଥିଲା ।

ଦିଲ୍ଲୀରେ ଆୟୋଜିତ ସ୍ୱାଧୀନତା ଦିବସ କାର୍ଯ୍ୟକ୍ରମ ଓ ବର୍ଷର ଛଅ ଋତୁକୁ
ନେଇ ଆୟୋଜିତ ଏକ ନୃତ୍ୟ ବିଚିତ୍ରାରେ ମଧ୍ୟ ଆମ କଳାକାରମାନେ ଯୋଗ-
ଦେଲେ ଓ ଭାରତର ତତ୍କାଳୀନ ରାଷ୍ଟ୍ରପତି ଡକ୍ଟର ରାଧାକୃଷ୍ଣନ ଓ ତତ୍କାଳୀନ

ଦେଶରକ୍ଷା ମନ୍ତ୍ରୀ ଶ୍ରୀ ଓ୍ୱାଇ. ଭି. ଚୌହ୍ୱାନଙ୍କ ପରି ବିଶିଷ୍ଟ ନେତାମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହେଲେ । ସେମାନେ ଆମ ଶିବିରକୁ ଆସି ସମ୍ମୁଖ ସଂଯୋଗ ନେବାର ସୁଯୋଗ ଦେଇଥିଲେ । ଏହି ସମସ୍ତ ମଧ୍ୟରେ ପଣ୍ଡିତ ଜବାହାରଲାଲ ନେହୃରୁ, ବର୍ମାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ୟୁ.ନୁ., ବମ୍ବେର ତତ୍କାଳୀନ ରାଜ୍ୟପାଳ ଶ୍ରୀ ମଙ୍ଗଳଦାସ ପକ୍ୱାଶା, ତତ୍କାଳୀନ କେନ୍ଦ୍ରୀୟ ଖାଦ୍ୟମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇଙ୍କ ପରି ବହୁ ବିଶିଷ୍ଟ ବ୍ୟକ୍ତି କଟକ ଆସି କେନ୍ଦ୍ରର କାର୍ଯ୍ୟକଳାପ ଦେଖି ଆଶୀର୍ବାଦ କରିଥିଲେ ଓ କେନ୍ଦ୍ରଦ୍ୱାରା ଆୟୋଜିତ ବିଚିତ୍ରାନୁଷ୍ଠାନମାନ ଦେଖିଥିଲେ ।

ଭାରତ ସରକାରଙ୍କ ଆନ୍ତଃରାଜ୍ୟ ସାଂସ୍କୃତିକ ବିନିମୟ ଯୋଜନାରେ କଳା ବିକାଶ କେନ୍ଦ୍ର ପ୍ରଥମ ବର୍ଷ ମହାରାଷ୍ଟ୍ର, ମଧ୍ୟପ୍ରଦେଶ ଓ ଦ୍ୱିତୀୟ ଥର ରାଜସ୍ଥାନ ଓ ଆସାମ ଯାଇଥିଲା ଏବଂ ଏସବୁ ରାଜ୍ୟମାନଙ୍କରେ ଓଡ଼ିଶୀ ନୃତ୍ୟ ସଙ୍ଗୀତ ପରିବେଷଣ କରିଥିଲା । ଏହି ଯୋଜନାରେ ଆସାମରୁ ଆସିଥିବା ଗୋଟିଏ ସାଂସ୍କୃତିକ ଦଳ ସହିତ ମିଶି ଉଭୟ ରାଜ୍ୟର କଳା ପ୍ରଦର୍ଶନ କଟକରେ କରାଯାଇଥିଲା ।

ଏହିପରି ଭାରତ ସରକାରଙ୍କ ଆନ୍ତଃରାଜ୍ୟ ବିଶିଷ୍ଟ କଳାକାରମାନଙ୍କ ବିନିମୟ ଯୋଜନାରେ ବମ୍ବେର ଜାଭେରୀ ଭଗ୍ନୀବୃନ୍ଦ ଓ କଲିକତାର ବାଣୀ ବିଦ୍ୟାବୀଥିର କଥକ କଳାକାରମାନଙ୍କ କାର୍ଯ୍ୟକ୍ରମ ଆମେ ଆୟୋଜନ କରିଥିଲୁ । ନାଟକ କ୍ଷେତ୍ରରେ ମଧ୍ୟ ଆମ୍ଭେମାନେ ଭାରତବର୍ଷରେ ପ୍ରଥମ ସ୍ଥାନ ଅଧିକାର କରିବା କଥା ଆଗରୁ ଉଲ୍ଲେଖ କରିଛୁ । ଅନୁଷ୍ଠାନ ତରଫରୁ ରେଡ଼କ୍ରସର ସାହାଯ୍ୟାର୍ଥେ ଏବଂ ବାତ୍ୟା, ବନ୍ୟା ଓ ଘରପୋଡ଼ି ଜନିତ ସାହାଯ୍ୟ ପାଣ୍ଠି ପାଇଁ ଅନେକଥର ସାହାଯ୍ୟ ରଜନୀର ଆୟୋଜନ କରାଯାଇଥିଲା । କବି ୭ ଗଙ୍ଗାଧର ମେହେରଙ୍କ ଜନ୍ମ ଶତାବ୍ଦୀ, ପଣ୍ଡିତ ଭାତଖଣ୍ଡେ ଜନ୍ମ ଶତାବ୍ଦୀ, ସ୍ୱାମୀ ବିବେକାନନ୍ଦ ଜନ୍ମ ଶତାବ୍ଦୀ ମଧ୍ୟ ସେହି ସମୟରେ କେନ୍ଦ୍ର ତରଫରୁ ପାଳନ କରାଯାଇଥିଲା । ବିଭିନ୍ନ ସ୍ଥାନରେ ଆୟୋଜିତ ଭଞ୍ଜ ଜୟନ୍ତୀ, ରବିନ୍ଦ୍ର ଜୟନ୍ତୀ, ଓ କଟକର କୁମାର ଉତ୍ସବ ସମିତି ଦ୍ୱାରା ଆୟୋଜିତ ବାର୍ଷିକ ଉତ୍ସବମାନଙ୍କରେ କେନ୍ଦ୍ର ବରାବର ଯୋଗ ଦେଇ ଆସୁଛି ।

ଏପରି କୌଣସି କ୍ଷେତ୍ର ନଥିଲା ଯେଉଁଥିରେ କି କଳା ବିକାଶ କେନ୍ଦ୍ର ଯୋଗ ଦେଉନଥିଲା । ଏପରିକି କଲିକତାର ଜାତୀୟ କ୍ରୀଡ଼ା ଓ ଶକ୍ତି ସଂଘଦ୍ୱାରା ଆୟୋଜିତ ବାର୍ଷିକ ଶିବିରରେ ଆମର ପିଲାମାନେ ଯୋଗଦେଇ କୃତିତ୍ୱ ଅର୍ଜନ କରିଥିଲେ । ଏହି ବର୍ଷମାନଙ୍କରେ ଆମର କେତେକ ଶିକ୍ଷକ ଓ ଛାତ୍ରଛାତ୍ରୀ ଉଚ୍ଚ ଶିକ୍ଷା ନିମିତ୍ତ ଭାରତର ଅନ୍ୟ ରାଜ୍ୟକୁ ଯାଇଥିଲେ ଏବଂ ବାହାରୁ ମଧ୍ୟ ଅନେକ ଛାତ୍ରଛାତ୍ରୀ କେନ୍ଦ୍ରରେ ଶିକ୍ଷା ପାଇବା ପାଇଁ ଭାରତ ସରକାରଙ୍କ ବୃତ୍ତିପାଇ ଆସିଥିଲେ । ସେମାନଙ୍କ ମଧ୍ୟରେ ଗୋଆର ଦକ୍ଷା ବ ାଦେକର, ଦିଲ୍ଲୀର ଏ. ସି. କାନଓ୍ୱାଲ ଓ

ବମ୍ବେର ମେନେକା ଠକ୍‌କ ଅନ୍ୟତମ । ଦିଲ୍ଲୀ Ballet :Centreରେ ଆମର କେତେକ ଗୁରୁସ୍ଥାନୀ ଯଥା—କସ୍ତୁରୀ, ହରିହର ବେହେରା, ଗୋପୀନାଥ ବେହେରା ଇତ୍ୟାଦି ଓ ଶିକ୍ଷକ ଶ୍ରୀ ମାୟାଧର ରାଉତ ମଧ୍ୟ ଟ୍ରେନିଂ ନେଇଥିଲେ । ଏହିପରି ଚତୁର୍ଦ୍ଦିଗରେ କଳାବିକାଶ କେନ୍ଦ୍ରର ଉନ୍ନତି ହେବାରୁ ସୁବିଧାବାଦୀ ଲୋକେ କେନ୍ଦ୍ରରେ ପଶିବାକୁ ଲାଗିଲେ । ବହୁ ବାହାର ଲୋକେ ମଧ୍ୟ ଏହାର ଉନ୍ନତି ସହି ନପାରି ଈର୍ଷାକଲେ ଓ ସବୁ ଆଡ଼ୁ ବାଧାବିଘ୍ନ ସୃଷ୍ଟି କରିବାରେ ଚେଷ୍ଟାକଲେ ।

## ଚଳଚ୍ଚିତ୍ର ଜଗତରେ ମୋର ପ୍ରବେଶ

କେତେକାଂଶରେ କେନ୍ଦ୍ରର ଆର୍ଥିକ ଅଭାବ ମେଣ୍ଟାଇବା ପାଇଁ କେତେକ ବନ୍ଧୁମାନେ ମୋତେ ଚଳଚ୍ଚିତ୍ର ନିର୍ମାଣ କରିବା ପାଇଁ ପରାମର୍ଶ ଦେଲେ । ନୃତ୍ୟ, ସଙ୍ଗୀତ, ନାଟକ ବ୍ୟତୀତ ଓଡ଼ିଶାରେ ଚଳଚ୍ଚିତ୍ର କଳାର ଉନ୍ନତି ମଧ୍ୟ ଏହାଦ୍ୱାରା ସମ୍ଭବ ହୋଇପାରିବ ବୋଲି ସେମାନେ ଭାବିଲେ ଏବଂ ଏଥିପାଇଁ "ଚିତ୍ରପୁରୀ" ନାମକ ଗୋଟିଏ ଶାଖା ଗଢ଼ାଯାଇ ସେହି ନାମରେ ଗୋଟିଏ ଫଳକ କେନ୍ଦ୍ର ପ୍ରାଙ୍ଗଣରେ ମରାଗଲା । ପ୍ରଯୋଜକମାନଙ୍କ ଅନୁଭୂତିରୁ ମୁଁ ଜାଣିପାରିଲି ଯେ ଚଳଚ୍ଚିତ୍ର ପ୍ରଯୋଜନା ଗୋଟିଏ ଅତି ସାହାସର ବ୍ୟାପାର । ଲାଭଠାରୁ କ୍ଷତିର ବେଶି ସମ୍ଭାବନା । ତେଣୁ କେନ୍ଦ୍ରକୁ ଏଥି ସହିତ ଜଡ଼ିତ କରିବା ଉଚିତ ହେବ ନାହିଁ ବୋଲି ମୁଁ ଭାବିଲି । ଅନ୍ୟ ବନ୍ଧୁମାନେ ମଧ୍ୟ ଶେଷରେ ତାହାହିଁ ପରାମର୍ଶ ଦେଲେ । ଶ୍ରୀ ବୈଦ୍ୟନାଥ ରଥ, କମଳ ଦା, ଶ୍ରୀ ଗୋପାଳ ଘୋଷରାୟ, ବାବୁବାବୁ, ନୀଳମାଧବ ବାବୁ ଓ ବଇଭାଇ ଆମେ ସମସ୍ତେ ମିଶି ଆପଣା ଭିତରେ ବହୁତ ଆଲୋଚନା କଲୁ । ୧୯୬୩ର ଏକ ଶୁଭ ସନ୍ଧ୍ୟାରେ ଛାୟାବାଣୀ ପ୍ରତିଷ୍ଠାନର ଜନ୍ମ । ପ୍ରଥମେ ଶ୍ରୀମତୀ ବସନ୍ତ କୁମାରୀ ପଟ୍ଟନାୟକଙ୍କ ଲେଖା "ଅମଡ଼ାବାଟ"କୁ ଚଳଚ୍ଚିତ୍ରରେ ରୂପାୟନ କରିବାର ସ୍ଥିର ହେଲା । କଲିକତା ବହୁରୂପୀ ଅନୁଷ୍ଠାନର ଶ୍ରୀ ଶମ୍ଭୁ ମିତ୍ର ଏବଂ ତାଙ୍କର ଚଳଚ୍ଚିତ୍ର ଅନୁଷ୍ଠାନର ଅଂଶୀଦାର ଶ୍ରୀ ଅମିତ ମୈତ୍ର ଓ ଶ୍ରୀ ଦେବକୀଭାଇ ମୋତେ ଏଥିରେ ସହଯୋଗକଲେ । ବହୁରୂପୀର ଜଣେ କଳାକାର ଶ୍ରୀ ଅମର ଗାଙ୍ଗୁଲିଙ୍କୁ ଏହାର ନିର୍ଦ୍ଦେଶନା ଭାର ଦିଆଗଲା । ଶ୍ରୀ ଅମିତ ମୈତ୍ରଙ୍କ ତତ୍ତ୍ୱାବଧାନରେ ଏ ଛବି ଏତେ ସୁନ୍ଦର ହେଲା ଯେ ତା' ପୂର୍ବରୁ ସବୁ ଚଳଚ୍ଚିତ୍ରମାନଙ୍କର ବକ୍ସଅଫିସ୍ ସବୁ ରେକର୍ଡ଼ ଭାଙ୍ଗିକରି ଶୀର୍ଷସ୍ଥାନ ଅଧିକାର କଲା । ଆଜି ଦଶବର୍ଷ ପରେ ମଧ୍ୟ ସେ ଚିତ୍ର ଲୋକେ ଦେଖିବାକୁ ପସନ୍ଦ କରନ୍ତି । ଗତବର୍ଷ ପୂର୍ବାଞ୍ଚଳ ସହରମାନଙ୍କରେ ଆୟୋଜିତ ଚଳଚ୍ଚିତ୍ର ପ୍ରଦର୍ଶନୀକୁ ଓଡ଼ିଆ ଚିତ୍ର ମଧ୍ୟରେ ଏହି ଛବି ମଧ୍ୟ ପଠାଯାଇଥିଲା ।

ମୁଁ ଆଗରୁ ତ କହିଛି ଯେ କଳା ବିକାଶ କେନ୍ଦ୍ରର ସାହାଯ୍ୟ ଲକ୍ଷ୍ୟରେ ମୋର ଚିତ୍ର ଜଗତରେ ପ୍ରବେଶ । ସୁତରାଂ ୧୯୬୪ର ବମ୍ବେରେ ଆୟୋଜିତ ଆମର

ବିଚିତ୍ରାନୁଷ୍ଠାନ ସମୟରେ 'ଗ୍ରାମ୍ୟବାଣୀ' ପରିବେଷକ ତରଫରୁ ପ୍ରଥମ କରି ୫,୦୦୦ ଟଙ୍କା କେନ୍ଦ୍ରକୁ ଦାନ ଘୋଷଣା କରାଗଲା । ତା'ପରେ କେତେକ କାରଣରୁ ଗୁପ୍ତ ଭାବରେ ଅନୁଷ୍ଠାନକୁ ଓ ଆମ କେନ୍ଦ୍ରର ଅନେକ ଅଭାବଗ୍ରସ୍ତ ଓ ଦୁଃସ୍ଥ ବନ୍ଧୁମାନଙ୍କୁ ଏ ଲକ୍ଷାଂଶରୁ ସାହାଯ୍ୟ କଲି ।

ଚିତ୍ର ଜଗତରେ ପ୍ରବେଶ କରିବା ଦ୍ୱାରା ମୋତେ ଅଧିକାଂଶ ଦିନ କେନ୍ଦ୍ର କାର୍ଯ୍ୟରୁ ଦୂରେଇ ଯିବାକୁ ପଡ଼େ । ତଦ୍ଦ୍ୱାରା କେନ୍ଦ୍ରର କାର୍ଯ୍ୟରେ ଅନେକ ଅସୁବିଧା ଘଟୁଥାଏ । ଚଳଚ୍ଚିତ୍ର ତ ତିଆରି ହେଲା । ସ୍ୱତନ୍ତ୍ର ଅଫିସ ମଧ୍ୟ ହେଲା । ଭାବିଲି କେତେକ ବନ୍ଧୁଙ୍କ ସାହାଯ୍ୟରେ ମୁଁ ପୁଣି ନୂଆ ନୂଆ ଚଳଚ୍ଚିତ୍ର ପ୍ରସ୍ତୁତ କରିବି, କିନ୍ତୁ ମୁଁ ନିଜେ ସେଥିରେ ସକ୍ରିୟ ଅଂଶ ଗ୍ରହଣ ନକରି ନିଜକୁ କେନ୍ଦ୍ର କାର୍ଯ୍ୟରେ ନିୟୋଜିତ କରିବି । ଏଥିରେ କିନ୍ତୁ ମୁଁ ସାଫଲ୍ୟମଣ୍ଡିତ ହୋଇପାରିଲି ନାହିଁ ଏବଂ ମୋର ଦ୍ୱିତୀୟ ଚିତ୍ର "ଅଭିନେତ୍ରୀ"ର ନିର୍ମାଣ କାର୍ଯ୍ୟରେ ମୋତେ ବାରମ୍ବାର ଯୋଗ ଦେବାକୁ ପଡ଼ିଲା । ଦୁଇ ଡଙ୍ଗାରେ ଗୋଡ଼ ଦେବାରୁ କେନ୍ଦ୍ରର କିମ୍ବା ଚଳଚ୍ଚିତ୍ର ପ୍ରତିଷ୍ଠାନର ଭଲ ଭାବରେ ସେବା କରିପାରିଲି ନାହିଁ । "ଅମଡ଼ାବାଟ" ଚଳଚ୍ଚିତ୍ରର ସଫଳତାରେ କେନ୍ଦ୍ର ତରଫରୁ କଳାକାରମାନଙ୍କୁ ସ୍ୱତନ୍ତ୍ର ସମ୍ବର୍ଦ୍ଧନା ଦିଆଯାଇଥିଲା । ସେପରି ସ୍ଥଳେ ମୋର "ଅଭିନେତ୍ରୀ" ଛବିରେ ଲାଗି ରହିବାଦ୍ୱାରା ସେହି କେନ୍ଦ୍ରର ଲୋକେ ମୋ ପ୍ରତି ବିମୁଖ ହେଲେ । ଏହି ସମୟରେ କିନ୍ତୁ ମୋର ପରମ ବନ୍ଧୁ ଶ୍ରୀ ବୈଦ୍ୟନାଥ ବାବୁ କେନ୍ଦ୍ରକୁ ସୁରୁଖୁରୁ ରୂପେ ଚଳାଇବାକୁ ବହୁତ ଚେଷ୍ଟାକଲେ । ସେ ନିଜେ କେନ୍ଦ୍ରର ସକ୍ରିୟ ଭାବରେ ଯୋଗ ଦେଇ ସବୁ କାର୍ଯ୍ୟ ବୁଝାବୁଝି କଲେ । ଏପରିକି କେନ୍ଦ୍ରର ଆସାମ, ରାଜସ୍ଥାନ ଗସ୍ତବେଳେ ସେ ନିଜେ ଦଳର ନେତୃତ୍ୱ ନେଇ ବହୁ ଦିନ ଧରି ବାହାରେ ରହିଲେ । ଏହାଛଡ଼ା କେନ୍ଦ୍ରକୁ ସଜାଡ଼ିବା ପାଇଁ ସେ ଅଦମ୍ୟ ଚେଷ୍ଟା ମଧ୍ୟ କଲେ । ଫଳରେ ସେ ମଧ୍ୟ ମୋ ଭଳି ବଦନାମ ହେଲେ । ତାଙ୍କ ଉପରେ ମଧ୍ୟ କେନ୍ଦ୍ରର ସିମେଣ୍ଟ ନେଇଯିବା କଥା ଆରୋପ କରାଗଲା । ସେହି ସମୟରେ ବିମଳବାବୁ ଥିଲେ ସାଧାରଣ ସମ୍ପାଦକ ଏବଂ ଶ୍ରୀ ଆର୍ତ୍ତତ୍ରାଣ ନନ୍ଦ ଥିଲେ ସହସମ୍ପାଦକ । ଶ୍ରୀ ଆର୍ତ୍ତବାବୁ ରେଭିନ୍ୟୁ ବୋର୍ଡ଼ରେ ଚାକିରି କରିବା ସମୟରୁ କେନ୍ଦ୍ର ସହିତ ସମ୍ପୃକ୍ତ ଥିଲେ । ଅବସର ନେବାପରେ ସେ କେନ୍ଦ୍ରରେ ସକ୍ରିୟ ଅଂଶ ଗ୍ରହଣ କଲେ । ଆର୍ତ୍ତବାବୁ ବହୁ ବର୍ଷ ଧରି ଅନୁଷ୍ଠାନରେ ଜଡ଼ିତ ହୋଇ ରହିଲେ । ଏବଂ କେନ୍ଦ୍ରର ସବୁ ସୁଖ ଦୁଃଖରେ ଭାଗୀ ହେଲେ । କେନ୍ଦ୍ର ପାଇଁ ଏପରିକି ମୋତେ ବଞ୍ଚାଇବାକୁ ଯାଇ ସେ ମଧ୍ୟ ଅନେକ ସମୟରେ ଦୁର୍ନାମ ପାଇଲେ । କେନ୍ଦ୍ରର କୌଣସି କ୍ଷତି ହେଲେ ସେ ସହିପାରନ୍ତି ନାହିଁ । କେନ୍ଦ୍ରର କୌଣସି ଜିନିଷ ଗଳିଗଲେ କିମ୍ବା ନଷ୍ଟ ହେଲେ ସେ ଚିତ୍କାର କରନ୍ତି । ମୋ ଜାଣିବାରେ ମୋ ପରେ ସେ

କେନ୍ଦ୍ରର କର୍ମକର୍ତ୍ତା ହିସାବରେ ସବୁଠାରୁ ବେଶୀଦିନ ଅନୁଷ୍ଠାନରେ ସକ୍ରିୟ ଭାବରେ କାର୍ଯ୍ୟ କରିଛନ୍ତି ।

ବିମଳବାବୁଙ୍କ କଥାତ ଆଗରୁ କହିଛି । ସେ ମଧ୍ୟ ଶୁଭେଚ୍ଛୁ ହିସାବରେ କେନ୍ଦ୍ର ପାଇଁ ଅନେକ କିଛି ଚିନ୍ତା କରୁଥିଲେ ଏବଂ ମୋତେ ମଧ୍ୟ ସେତିକି ଭଲ ପାଉଥିଲେ । ଏସବୁ ସତ୍ତ୍ୱେ ଯେତେବେଳେ ଅନୁଷ୍ଠାନରେ ଗୃହ କଳହ ଲାଗି ରହିଲା ସେତେବେଳେ ମୁଁ କେତେକ ଯୁବକ ଉତ୍ସାହୀ କର୍ମୀମାନଙ୍କ ହାତରେ କେନ୍ଦ୍ରର ଭାର ଦେବାପାଇଁ ପ୍ରସ୍ତାବ ଆଣିଲି । ଶ୍ରୀ ପ୍ରବୋଧ ପଟ୍ଟନାୟକ, ଶ୍ରୀ ଦୀପେନ୍ ବୋଷ, ଗିରିବାବୁଙ୍କ ପରି ବହୁ ଉତ୍ସାହୀ ଯୁବକ ସେତେବେଳେ ଅନୁଷ୍ଠାନ କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ନୂତନ କାର୍ଯ୍ୟକାରୀ କମିଟିରେ ଆମେ ସମସ୍ତେ, ପୁରୁଣା ବନ୍ଧୁ ଓହରିଯିବା ଏବଂ ଏହି ଯୁବକମାନଙ୍କୁ ଭାର ଦେବାର ପ୍ରସ୍ତାବର ସମର୍ଥନ ପାଇଲି ନାହିଁ । ଫଳରେ ମୁଁ ନିଜେ କାର୍ଯ୍ୟକାରୀ କମିଟିରେ ନ ରହିଲେ ସୁଦ୍ଧା ଅନ୍ୟମାନେ ରହିଲେ ଏବଂ ଏହି ଯୁବକମାନେ ମଧ୍ୟ ନିରୁତ୍ସାହୀ ହୋଇ କେନ୍ଦ୍ରରୁ ଧୀରେ ଧୀରେ ଦୂରେଇ ଗଲେ ।

ପୁଣି ଆପଣମାନଙ୍କୁ ସେହି ଚଳଚିତ୍ର କଥା କହୁଛି । ଅବ୍ୟବସ୍ଥା ଯୋଗୁ "ଅଭିନେତ୍ରୀ"ରେ ମୁଁ ବିଶେଷ ଲାଭବାନ ହୋଇପାରିଲି ନାହିଁ । ପରେ ମୋର ଦ୍ୱିତୀୟ ଛବି "ମାଟିର ମଣିଷ"ରେ ଘୋର କ୍ଷତି ଘଟିଲା । କଳା ଦୃଷ୍ଟିରୁ ସେ ଓଡ଼ିଶାର ଶ୍ରେଷ୍ଠ ଛବି ବିବେଚିତ ହେଲେ ସୁଦ୍ଧା ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ସୁନାମ ଅର୍ଜିବା ସତ୍ତ୍ୱେ ବ୍ୟବସାୟିକ ଦୃଷ୍ଟିରୁ ସେଥିରେ ଲାଭବାନ ହୋଇପାରିଲି ନାହିଁ । ସୁତରାଂ ଅନୁଷ୍ଠାନକୁ ସାହାଯ୍ୟ କରିବା ସ୍ଥଳେ ନିଜକୁ ବଞ୍ଚାଇ ରଖିବା ପାଇଁ ମୋତେ ଚିନ୍ତାଗ୍ରସ୍ତ ହେବାକୁ ପଡ଼ିଲା ।

୧୯୬୫ର ପ୍ରାରମ୍ଭରେ ଆମ ଦଳ ବମ୍ବେରୁ ଫେରିବା ପରେ ଆମ୍ଭେମାନେ ନାନା ଦୁର୍ନାମ ଶୁଣିଲୁଁ । ମୋତେ ଦୁଇବର୍ଷ କେନ୍ଦ୍ରରୁ ଅନ୍ତର ହେବାକୁ ପଡ଼ିଲା । ଏଥିରେ ପୁଣି "ମାଟିର ମଣିଷ"ର କ୍ଷତିହେଲା । ସେହି ସମୟରେ ମୋର ସ୍ତ୍ରୀଙ୍କ ଦେହ ମଧ୍ୟ ଅତିମାତ୍ରାରେ ଖରାପ ହେଲା । ଏହି ସମୟରେ ମୋର କେତେକ ଅନ୍ତରଙ୍ଗ ବନ୍ଧୁ ମଧ୍ୟ ମୋର ପ୍ରତି ବିମୁଖ ହେଲେ । ସୁତରାଂ ଦୁଇବର୍ଷ କାଳ ମୋର ଜୀବନ ଅତି ଦୁଶ୍ଚିନ୍ତା ଓ କଷ୍ଟରେ କଟିଲା । ଖୁବ୍ ଧୈର୍ଯ୍ୟ ଧରି ବସିଥାଏ । ପୁଣି ଭଲଦିନ ଆସିବ ଏହି ବିଶ୍ୱାସ ମୋରଥିଲା । ଦେଖାଗଲା, ପୁଣି ଆପେ ଆପେ ସବୁ ସଜାଡ଼ି ହୋଇଗଲା । ଯେଉଁମାନେ ନିଜର ସ୍ୱାର୍ଥ କିମ୍ବା କୌଣସି ଉଦ୍ଦେଶ୍ୟ ନେଇ ଅନୁଷ୍ଠାନରେ ପଶିଥିଲେ ସେମାନେ ସମସ୍ତେ ଏକାବେଳକେ ଦୂରେଇ ଯିବାକୁ ବାଧ୍ୟ ହେଲେ । ଯେଉଁମାନେ ମୋର କେତେକ ଭୁଲ ସୁଧାରିବା ପାଇଁ ମୋଠାରୁ ଅନ୍ତର

ହୋଇଥିଲେ ସେ ସମସ୍ତେ ପୁଣି ବନ୍ଧୁ ଭାବରେ ମୋ କାର୍ଯ୍ୟରେ ଆସି ଯୋଗଦେଲେ । ଏହି ଜାଗାରେ ଗୋଟିଏ କଥା ଉଲ୍ଲେଖଯୋଗ୍ୟ । ଶ୍ରୀମାନ୍ ଗୋବିନ୍ଦ ମିଶ୍ର, ଶ୍ରୀ ଅମରେନ୍ଦ୍ରପ୍ରସାଦ ଗିରି, ଶ୍ରୀ ରାଖାଲଚନ୍ଦ୍ର ମହାନ୍ତିଙ୍କ ପରି କେତେକ ବନ୍ଧୁ ସବୁବେଳେ ଆଲୋଚକର ଭୂମିକା ନେଇଥାନ୍ତି, କିନ୍ତୁ ଏମାନେ ସମସ୍ତେ ଅନୁଷ୍ଠାନକୁ ଯେତିକି ଭଲ ପାଆନ୍ତି ତାଠାରୁ ବେଶି ମୋତେ ମଧ୍ୟ ଭଲ ପାଆନ୍ତି । ସୁତରାଂ ଅନେକ ସମୟରେ ଆମର ମତ ପାର୍ଥକ୍ୟ ହେଲେ ସୁଦ୍ଧା ସହଜରେ ମନ ମିଳି ଯାଉଥିଲା । ଗିରିବାବୁ ବର୍ଷ ବର୍ଷ ଧରି ପାଠ ପଢ଼ିବା ସମୟରେ ଏବଂ ବିବାହ କଲାପରେ ମଧ୍ୟ ମୋ ଘରେ ରହୁଥିଲେ । କେନ୍ଦ୍ର କାର୍ଯ୍ୟରେ ମୋ ସହିତ ତାଙ୍କର ମତ ପାର୍ଥକ୍ୟ ଥିଲେ ସୁଦ୍ଧା ବ୍ୟକ୍ତିଗତ ଜୀବନରେ ଆମେ ଏକ ପରିବାର ପରି ଏକାଠି ଚଳୁଥିଲୁ । ମୋ ଘରେ ରହୁଥାଆନ୍ତି ବୋଲି ମୁଁ ତାଙ୍କୁ ଅନ୍ୟ ଢଙ୍ଗ ର ପ୍ରଭାବିତ କରିବି ଏପରି ଦୁଶ୍ଚିନ୍ତା ମୋ ମନରେ ପ୍ରବେଶ କରିନଥିଲା । ମୁଁ ନଥିବା ଅବସ୍ଥାରେ ମଧ୍ୟ ସେ ଯୁଗ୍ମ ସମ୍ପାଦକ ହିସାବରେ କାର୍ଯ୍ୟ କରୁଥିଲେ ଏବଂ କେବେନହେଲେ ତାଙ୍କୁ ମୁଁ କିଛି କହି ନାହିଁ । ସେହିପରି ମୋର ପ୍ରାୟ ସବୁ ରାଜନୈତିକ ବନ୍ଧୁ ଆଜିଯାଏ ମୋତେ ଛାଡ଼ି ନାହାନ୍ତି । କେବଳ ନିଜ ନିଜ ସଂସାରରେ ବ୍ୟସ୍ତରହି ସେମାନଙ୍କ ମଧ୍ୟରୁ କେତେକ କେନ୍ଦ୍ର କାର୍ଯ୍ୟରେ ବେଶି ଧ୍ୟାନ ଦେଇପାରୁ ନାହାନ୍ତି, କିନ୍ତୁ ଏହିପରି ନିସ୍ୱାର୍ଥ ଭାବରେ ଯେତେ ବନ୍ଧୁ କେନ୍ଦ୍ରରେ ଯୋଗ ଦେଇଥିଲେ ସେମାନେ ଆଜିଯାଏ କେନ୍ଦ୍ରର ଚିର ବନ୍ଧୁ ହିସାବରେ ରହିଛନ୍ତି ।

ଯାହାହେଉ, ୧୯୬୭ ପରେ ପୁଣି ମୁଁ କେନ୍ଦ୍ରରେ ଯୋଗ ଦେଲାବେଳେ ବାଟ ପରିଷ୍କାର ହୋଇଯାଇଥିଲା । ସୁତରାଂ ମୁଁ ପୁଣି ସକ୍ରିୟ ଭାବରେ କାର୍ଯ୍ୟ ଆରମ୍ଭ କଲାପରେ ଆଉ ଥରେ ଚଳଚ୍ଚିତ୍ର ନିର୍ମାଣ କରି ଅନୁଷ୍ଠାନକୁ ସାହାଯ୍ୟ କରିବାକୁ ମନସ୍ଥ କଲି ଏବଂ ମୋର ଚତୁର୍ଥ ଛବି "ଅଦିନ ମେଘ" ତିଆରି ହେଲା । ମୋର ଅନୁପସ୍ଥିତିରେ ଅନ୍ୟ ବନ୍ଧୁମାନେ ବିଶେଷତଃ ଦୃଷ୍ଟିବାବୁ, ଗିରିବାବୁ ପ୍ରମୁଖ କେନ୍ଦ୍ରକୁ ସୁରୁରୁ ରୂପେ ଚଲାଇବା ପାଇଁ ଚେଷ୍ଟାକଲେ, କିନ୍ତୁ ଆଗର ରଙ୍ଗ ଆସିପାରିଲା ନାହିଁ । ଏପରି କେନ୍ଦ୍ରର କୋଡ଼ିଏ ବର୍ଷ କଟିଗଲା । ପଚିଶ ବର୍ଷ ଶେଷ କରିବାର ଚିନ୍ତାକରି ମୁଁ ଅନୁଷ୍ଠାନକୁ ନୂଆ ରକମ ଗଢ଼ିବା ପାଇଁ ଚିନ୍ତାକଲି । ପଚିଶ ବର୍ଷ ଶେଷ ହେଲେ ଅନୁଷ୍ଠାନର ରୌପ୍ୟ ଜୁବୁଲି ମହାସମାରୋହରେ ପାଳନ ହେବ । ଏହି ସମୟ ମଧ୍ୟରେ ନୂଆ ନୂଆ ଉତ୍ସାହୀ ଯୁବକମାନଙ୍କୁ କେନ୍ଦ୍ରକୁ ଆଣି ସେମାନଙ୍କୁ ତାଲିମ ଦିଆଇବା ହେଲା ମୋର ଲକ୍ଷ୍ୟ । ସୁତରାଂ ସବୁ ଅଡ଼ୁ ଭାବ ମୋର ଚଳଚ୍ଚିତ୍ର ପ୍ରଯୋଜନାକୁ ସାମୟିକ ଭାବରେ ବନ୍ଦକଲି ଓ ଶ୍ରୀମାନ ପ୍ରତାପ କୁମାର ଚୌଧୁରୀ, ଶ୍ରୀ ରାଜକିଶୋର କ୍ୟାଲ, ଶ୍ରୀ ତୁଳସୀ ଚରଣ ପଟ୍ଟନାୟକଙ୍କ ପରି କେତେକ ଯୁବକମାନଙ୍କୁ ମୁଁ ଏ ଦିଗରେ ତାଲିମ କରିବା ପାଇଁ ଯତ୍ନଶୀଳ ହେଲି ଓ କେତେକ ଉତ୍ସାହୀ ଯୁବକମାନଙ୍କୁ

ମଧ୍ୟ କେନ୍ଦ୍ରର ସଭ୍ୟ ହିସାବରେ ନିଆଗଲା, ଯଦ୍ଦ୍ୱାରା ସେମାନେ ଭବିଷ୍ୟତରେ ଅନୁଷ୍ଠାନର କର୍ଣ୍ଣଧାର ହୋଇ କାର୍ଯ୍ୟ ସୁରୁଖୁରୁରୂପେ ଚଳାଇପାରିବେ । ତନ୍ମଧ୍ୟରେ ଡ. ମନୋରଞ୍ଜନ ମହାନ୍ତି, ଶ୍ରୀ ପୁରଞ୍ଜନ ରାଏ, ଶ୍ରୀ ରଣଧୀର ଦାସ, ଶ୍ରୀ ଗୋପୀନାଥ ସାହୁ, ଶ୍ରୀ ରାମହରି ମିଶ୍ର ଅନ୍ୟତମ ।

କେନ୍ଦ୍ରର ଟିକିନିଖି କାର୍ଯ୍ୟ ପାଇଁ ମୋତେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଲାଗି ରହିବାକୁ ପଡ଼ିଲା । ଗୋଳମାଳ ପରେ କେନ୍ଦ୍ର ଏପରି ହୁଗୁଳା ହୋଇ ପଡ଼ିଥିଲା ଯେ ଶିକ୍ଷକ, ଚୁକ୍ତିଭିତ୍ତିକ କର୍ମକର୍ତ୍ତା, ଏପରିକି ରିକ୍ସାବାଲାମାନେ ମଧ୍ୟ ଥିଲେ ଗୋଟିଏ ଗୋଟିଏ ସମସ୍ୟା । ସବୁବେଳେ ଏହି କଥା ବୁଝିଲାବେଳକୁ ଅନୁଷ୍ଠାନର ଆଉ ଉନ୍ନତି କ'ଣ ହେବ ? ସୁତରାଂ ଏପରି ଦୈନନ୍ଦିନ ସମସ୍ୟାଗୁଡ଼ିକୁ ସଜାଡ଼ିବା ପାଇଁ କେନ୍ଦ୍ରର ଗୋଟିଏ ପ୍ରଶାସକ ଅଫିସର (Administrative Officer) ନିଯୁକ୍ତି କରିବାର ସ୍ଥିର ହେଲା ଏବଂ ସେହି ଦିନରୁ ଅବଳମ୍ବିତ ଅବସର ପ୍ରାପ୍ତ ଡେପୁଟି କଲେକ୍ଟର ଶ୍ରୀ ନନ୍ଦ କିଶୋର ମହାନ୍ତି ଏହି କାର୍ଯ୍ୟରେ ଅଛନ୍ତି । ଅବଶ୍ୟ ଏହି ନିଯୁକ୍ତି ଅନେକ ପସନ୍ଦ କଲେ ନାହିଁ । ତାଙ୍କର କାର୍ଯ୍ୟରେ ମଧ୍ୟ ଅନେକେ ସନ୍ତୁଷ୍ଟ ହେଲେ ନାହିଁ, କିନ୍ତୁ ତାଙ୍କର ଗୁଣ କେବଳ ମୁଁ ବୁଝିପାରିଥିଲି । ତାଙ୍କର ନମ୍ରତା ଓ ଧୈର୍ଯ୍ୟ କେବଳ ମୁଁ ନୁହେଁ ପରେ ପରେ କେତେକ ବନ୍ଧୁ ମଧ୍ୟ ଅନୁଭବ କରି ପାରିଲେ । ସୁତରାଂ ଧୀରେ ଧୀରେ ଏହି ବିରୋଧ ଭାବ ଅପସରି ଗଲା ଏବଂ ଆଜି ସେ ଖୁବ୍ ନିଷ୍ଠାପର ଓ ନିପୁଣ କର୍ମୀ ହିସାବରେ ଅନୁଷ୍ଠାନରେ ସହଯୋଗ କରି ଆସୁଛନ୍ତି ।

କାର୍ଯ୍ୟ କ୍ଷେତ୍ରରେ ଦେଖାଯାଇଛି ଯେ ପ୍ରତ୍ୟେକ ଲୋକଙ୍କର ସୁଗୁଣ ଓ ଦୁର୍ଗୁଣ ରହିଛି । ଆମର ସହଜ ପ୍ରକୃତି ହେଉଛି ଲୋକଙ୍କର ଦୁର୍ଗୁଣ ଆଗେ ଦେଖିବା, କିନ୍ତୁ ଯଦି ଆମେ ଦୁର୍ଗୁଣ ପ୍ରତି ଦୃଷ୍ଟି ନଦେଇ କେବଳ ଭଲ ଗୁଣର ବିନିଯୋଗ କରନ୍ତେ, ତାହାହେଲେ ଆମେ ସମସ୍ତଙ୍କ ପାଖରୁ ଭଲ କାମ ଆଦାୟ କରିପାରିବା । ଏପରି ସର୍ବସାଧାରଣ ଅନୁଷ୍ଠାନମାନଙ୍କରେ ଯାହାର ଯେତେ ସହଯୋଗ ମିଳିଲା ସେତିକି ଆଦାୟ କରି ବିଶେଷ ସହଯୋଗର ଆଶା ରଖିବା ଉଚିତ ନୁହେଁ । ଲୋକଙ୍କ ପାଖରୁ କାମ ଆଦାୟ କରିବା ହେଉଛି ମଧ୍ୟ ଗୋଟିଏ କଳା । ସମସ୍ତଙ୍କୁ ଆଦର କରି ସେମାନଙ୍କର ସୁଖ ଦୁଃଖରେ ଭାଗନେଲେ ମନୁଷ୍ୟ ମାତ୍ରେ ସମସ୍ତଙ୍କଠାରୁ ପ୍ରତିଦାନ ନିଶ୍ଚୟ ପାଇବେ । ମୋର ପଚିଶ ବର୍ଷର ଅଭିଜ୍ଞତାରୁ ମୁଁ ଏହା ଦେଖି-ପାରିଛି । ମୋର ଭବିଷ୍ୟତର କର୍ମୀମାନେ ଏଥିପ୍ରତି ଦୃଷ୍ଟି ରଖିଲେ ହୁଏତ ସେମାନେ କେନ୍ଦ୍ରରେ ବହୁ ଲୋକଙ୍କର ସାହାଯ୍ୟ ସହାନୁଭୂତି ପାଇ ପାରିବେ ।

ପ୍ରଥମ ଦଶ ବର୍ଷର ଚମତ୍କାର ଉତ୍ଥାନ ପରେ ପୁଣି ମଝିରେ ପାଞ୍ଚ ବର୍ଷ ଆସିଲା ପତନର କାଳ । ଏଥର ଆମର ଚେତନା ପଶିଲା । ଅନୁଷ୍ଠାନକୁ ସବୁ ଦିନ

ପାଇଁ ଋଣ ଗ୍ରାସରୁ ମୁକ୍ତ କରିବା ପାଇଁ ବାଟ ଖୋଜାଗଲା । ଫେଷ୍ଟ ହେଲା Trust Boardର ଜନ୍ମ । ବାରିଷ୍ଟର ଗୋବିନ୍ଦ ଦାସଙ୍କ ସାହାଯ୍ୟରେ ସମ୍ବିଧାନର ସଂଶୋଧନ ଚଠା ପ୍ରସ୍ତୁତ କରାଗଲା ଏବଂ ବହୁ ଆଲୋଚନା ଓ ବିବେଚନା ପରେ ନୂଆ ସମ୍ବିଧାନ ଅନୁଯାୟୀ ଗୋଟିଏ ଟ୍ରଷ୍ଟବୋର୍ଡ ରେଜେଷ୍ଟ୍ରି କରାଗଲା ଏବଂ ଏହି ଟ୍ରଷ୍ଟ ବୋର୍ଡରେ ଜଷ୍ଟିସ ହରିହର ମହାପାତ୍ର, ଶ୍ରୀ ବାମାଚରଣ ଦାସ, ଶ୍ରୀ ଶ୍ୟାମ ସୁନ୍ଦର ମିଶ୍ର, ମୁଁ ନିଜେ ଓ ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି ସଭ୍ୟ ହିସାବରେ ରହିଲୁ । ଏହିପରି ଧୀରେ ଧୀରେ କେନ୍ଦ୍ରର ସ୍ଥାବରାସ୍ଥାବର ସମ୍ପତ୍ତି ଓ ପରିଚାଳନା ଟ୍ରଷ୍ଟ ବୋର୍ଡ ହାତରେ ଆସିବାରୁ ଆମ୍ଭେମାନେ ନିଶ୍ଚିନ୍ତ ହେଲୁ । ଏହି ଅବସରରେ ଜଷ୍ଟିସ୍ ହରିହର ମହାପାତ୍ରଙ୍କ ସମ୍ବନ୍ଧରେ କିଛି ଲେଖୁଛି । ସେ ପ୍ରଥମେ କେତେ ଦିନ କେନ୍ଦ୍ରର ସଭାପତି ଥିଲେ । ପରେ ପାଟନା ହାଇକୋର୍ଟର ବିଚାରପତି ହିସାବରେ ରହିବାରୁ ବହୁବର୍ଷ ଧରି ସେ ଓଡ଼ିଶା ବାହାରେ ରହିଲେ । ତଥାପି ତାଙ୍କର କଟକ ରହଣି ଭିତରେ ସେ ଅନୁଷ୍ଠାନର କଥା ବୁଝାବୁଝି କରୁଥାଆନ୍ତି । ପରେ ପୁଣି ଓଡ଼ିଶା ଫେରି ଆସିବାରୁ ସେ ସଭାପତି ହିସାବରେ କାର୍ଯ୍ୟଭାର ଗ୍ରହଣ କଲେ ଏବଂ ଆଜିଯାଏ ତାଙ୍କରି ଛତ୍ରଚ୍ଛାୟାରେ ଅନୁଷ୍ଠାନ ଭଲ ଭାବରେ ଚାଲିଛି । କର୍ମୀମାନଙ୍କର ସୁବିଧା ଅସୁବିଧା ଏବଂ ମନର କଥା ସେ ଭଲ ଭାବେ ହୃଦୟଙ୍ଗମ କରନ୍ତି ଓ ସବୁବେଳେ କର୍ମକର୍ତ୍ତା ମାନଙ୍କୁ ଉତ୍ସାହବାଣୀ ଶୁଣାନ୍ତି । ଫଳରେ ଅନେକ ସମୟରେ ଭାଙ୍ଗି ପଡ଼ିଲା ବେଳେ ମୁଁ ତାଙ୍କ ପାଖରୁ ପ୍ରେରଣା ଓ ସାହସ ପାଇଛି ।

ସେହିପରି ଆଉ ଜଣେ ବନ୍ଧୁ ଶ୍ରୀ ଜେ. ପି. ଦାସ ମଧ୍ୟ ଏହି କେତେ ବର୍ଷ ଭିତରେ ଅନୁଷ୍ଠାନକୁ ଅନେକ କିଛି ସାହାଯ୍ୟ କରିଛନ୍ତି । ଯେ କୌଣସି ସରକାରୀ ପଦରେ ଥିଲେ ମଧ୍ୟ ସେ କେନ୍ଦ୍ରକଥା ସଦାବେଳେ ଚିନ୍ତା କରନ୍ତି । ପରେ ସେ ଭାରତ ସରକାରଙ୍କ ଅଧୀନରେ ଦିଲ୍ଲୀରେ ଅବସ୍ଥାପିତ ହେଲେ । ସେଠାରେ ରହି ମଧ୍ୟ ଆଜିଯାଏ ସେ କେନ୍ଦ୍ର କାର୍ଯ୍ୟରେ ନାନା ଦିଗରେ ସାହାଯ୍ୟ କରି ଆସୁଛନ୍ତି ।

ଶେଷ ଦଶ ବର୍ଷର ପ୍ରାରମ୍ଭରେ ଶ୍ରୀ ଅମୂଲ୍ୟଚରଣ ମିଶ୍ର କେତେ ଦିନ କେନ୍ଦ୍ରର ଭାର ନେଇଥିଲେ ଏବଂ ପ୍ରଫୁଲ୍ଲ ସିଂହ ଓ ଅନ୍ୟ ଯୁବକମାନଙ୍କ ସାହାଯ୍ୟରେ କେନ୍ଦ୍ରକୁ ସଜାଡ଼ିବାରେ ଚେଷ୍ଟା କରିଥିଲେ । ଆଉ କେତେକ ଦିନ ବୈଦ୍ୟନାଥ ବାବୁ ମଧ୍ୟ କେନ୍ଦ୍ର କାର୍ଯ୍ୟରେ ସକ୍ରିୟ ଯୋଗ ଦେଇଥିଲେ, କିନ୍ତୁ ବୟସ ଓ ପାରିବାରିକ ଅସୁବିଧା ଓ କେନ୍ଦ୍ରର ବର୍ତ୍ତମାନ ପରିସ୍ଥିତିରେ କେହି ଆଉ କେନ୍ଦ୍ରକୁ ପୂର୍ବାବସ୍ଥାକୁ ଆଣିପାରିଲେ ନାହିଁ । ଏସବୁ କଥାର ପୁନର୍ବିଚାର କରି ମୁଁ ଭାବିଲି ଯେ ଆଉ ବୟସ୍କ ଲୋକଙ୍କଦ୍ୱାରା ବେଶୀ କାର୍ଯ୍ୟ କରିହେବ ନାହିଁ । ସୁତରାଂ ଆଗରୁ କହିଥିବା ମୁତାବକ ଯୁବକମାନଙ୍କୁ ତାଲିମ ଦେବାକୁ ଆରମ୍ଭ କଲି । ଅର୍ଥାଭାବରୁ ସବୁ ଦିନ କେନ୍ଦ୍ରକୁ

ମୁକ୍ତ କରିବା ପାଇଁ ମଧ୍ୟ ଗମ୍ଭୀର ଚିନ୍ତା କଲୁ ଓ ସେଥିପାଇଁ ଦୁଇଟି ପନ୍ଥା ଗ୍ରହଣ କରାଗଲା । ପ୍ରଥମ ଯୋଜନା ହେଲା ଛାତ୍ରୀ ନିବାସ । କଟକରେ ବାହାରୁ ଆସୁଥିବା ଛାତ୍ରୀମାନଙ୍କ ରହିବା ପାଇଁ ସ୍ଥାନର ଅତ୍ୟନ୍ତ ଅଭାବ । ସୁତରାଂ ଆମର କ୍ଷୁଦ୍ର ଛାତ୍ରୀ ନିବାସର ପରିସର ବଢ଼ାଇବାର ଚିନ୍ତା କରାଗଲା । ଏହା କେନ୍ଦ୍ରର ଛାତ୍ରୀ ସଂଖ୍ୟା ବଢ଼ାଇବା ସଙ୍ଗେ ସଙ୍ଗେ କେନ୍ଦ୍ରର ଅଭାବ ମଧ୍ୟ ଦୂର କରିବାରେ କେତେକାଂଶରେ ସାହାଯ୍ୟ କଲା । ଧୀରେ ଧୀରେ ଷାଠିଏ ପର୍ଯ୍ୟନ୍ତ ଛାତ୍ରୀଙ୍କୁ ଏହି ଛାତ୍ରୀ ନିବାସରେ ରଖାଗଲା । ବର୍ତ୍ତମାନ ଏମାନଙ୍କ ଭିତରୁ ଅନେକେ ଶୈଳବାଳା ମହିଳା କଲେଜରେ ଶିକ୍ଷା କରନ୍ତି ଏବଂ ସନ୍ଧ୍ୟା ସମୟରେ ଗୀତ, ନାଚ, କମ୍ପା ସିଲାଇ ଶିକ୍ଷା କରନ୍ତି । କେତେକ ମହିଳା କର୍ମଚାରୀମାନଙ୍କୁ ମଧ୍ୟ ଛାତ୍ରୀ ନିବାସରେ ସ୍ଥାନ ଦିଆଯାଇଛି ଏବଂ ଆହୁରି ଏହାର ପରିସର ବଢ଼ାଇବା ପାଇଁ ଆମର ଯୋଜନା ରହିଛି । ଏହି ଛାତ୍ରୀ ନିବାସ ପରିଚାଳନା ପାଇଁ ଆମର ପୁରୁଣା ରାଜନୈତିକ କର୍ମୀ ଶ୍ରୀମତୀ ସୁଷମା ଦେବୀଙ୍କୁ ଅଣାଗଲା ଏବଂ ସେ ଆଜଯାଏ ଅବୈତନିକ ଭାବରେ ନିଷ୍ଠାର ସହ ଛାତ୍ରୀ ନିବାସ ପରିଚାଳନା ଦାୟିତ୍ୱରେ ଅଛନ୍ତି ।

ଉପର ଲିଖିତ ସିଲାଇ ବିଭାଗର ମଧ୍ୟ ଗୋଟିଏ ଇତିହାସ ଅଛି । ତତ୍କାଳୀନ ଶିଳ୍ପ ବିଭାଗ ମନ୍ତ୍ରୀ ଶ୍ରୀ ହରିହର ପଟେଲ ଲୋକସଭା ସଦସ୍ୟ ଥିବାବେଳେ ଆମେ ଯେତେବେଳେ ଦିଲ୍ଲୀ ଯାଇଥିଲୁ ସେହି ସମୟରୁ ସେ କେନ୍ଦ୍ର କଥା ଜାଣିଥିଲେ । ପରେ ଆମ ରାଜ୍ୟର ମନ୍ତ୍ରୀ ହେବାପରେ ଅନୁଷ୍ଠାନର ସଭ୍ୟ ହିସାବରେ ଯୋଗଦେଲେ । ଶିଳ୍ପ ବିଭାଗରୁ କି ଆକାରରେ ଆର୍ଥିକ ସାହାଯ୍ୟ ଦିଆଯାଇପାରେ ଏ ବିଷୟରେ ଚିନ୍ତା କରି ସେ କେନ୍ଦ୍ରର ଗୋଟିଏ ସିଲାଇ ବିଭାଗ ଆରମ୍ଭ କରିବାକୁ ପରାମର୍ଶ ଦେଲେ ଏବଂ ଶିଳ୍ପ ବିଭାଗ ତରଫରୁ ସାହାଯ୍ୟ ମଧ୍ୟ ଦେଲେ । ଏହି ସିଲାଇ ବିଭାଗର ଉତ୍ତରୋତ୍ତର ଉନ୍ନତି ହେଲା ଏବଂ ବର୍ତ୍ତମାନ ଯଦିବା ସେ ମନ୍ତ୍ରୀ ନାହାନ୍ତି ତଥାପି ଏହି ଶିଳ୍ପ ବିଭାଗରୁ ସାହାଯ୍ୟ ଅବ୍ୟାହତ ରହିଛି ।

କେନ୍ଦ୍ରର ଅର୍ଥ ଅଭାବ ମେଣ୍ଟାଇବା ପାଇଁ ଆଉ ଗୋଟିଏ ଯୋଜନା ହେଲା ରଙ୍ଗମଞ୍ଚ ନିର୍ମାଣ । ଆମେ ଭାବିଥିଲୁ ଯେ ଏହି ରଙ୍ଗମଞ୍ଚ ନିର୍ମାଣ କଲେ ତାହାର ଭଡ଼ାରେ ଆମେ ବହୁ ଟଙ୍କା ଅର୍ଜନ କରିବୁ । ଏ କଥା ସତ, କିନ୍ତୁ ଏହି ରଙ୍ଗମଞ୍ଚରେ ଏତେବେଶୀ ଟଙ୍କା ଖର୍ଚ୍ଚ ହେବ ବୋଲି ଆମର ଧାରଣା ନଥିଲା । ମୂଳ ଅଟକଳ ୯୭,୦୦୦ ଟଙ୍କା ସ୍ଥଳେ ବର୍ତ୍ତମାନ ଅସି ଆଠଲକ୍ଷ ଟଙ୍କାରେ ପହଞ୍ଚିଲାଣି । ଯାହାହେଉ, ଏହି ରୌପ୍ୟ ଜୁବୁଲି ବର୍ଷରେ ଏ ରଙ୍ଗମଞ୍ଚର କାର୍ଯ୍ୟ ଶେଷ ହେଲେ ଆମେ ଏଥିରୁ ଯଥେଷ୍ଟ ଆୟ କରିପାରିବୁ ।

ଏହିପରି ହଷ୍ଟେଲ୍ ଓ ହଲ୍, ଏହି ଦୁଇଟି ଯୋଜନା ଅନୁଷ୍ଠାନର ସୁଚାରୁ ପରିଚାଳନାରେ ଅନେକାଂଶରେ ସାହାଯ୍ୟ କରିବ, ଏଥିରେ ସନ୍ଦେହ ନାହିଁ ।

ଦରଦାମ ବୃଦ୍ଧି ହେତୁ ଶିକ୍ଷକମାନେ ଆଉ କମ୍ ଦରମାରେ ରହି କାର୍ଯ୍ୟ କରିବାକୁ ସମ୍ମତ ହେଲେ ନାହିଁ । ନୃତ୍ୟ ଗୀତର ଚାରିଆଡ଼େ ପ୍ରଚାର ଓ ପ୍ରସାରଦ୍ୱାରା ସେମାନଙ୍କୁ ମଧ୍ୟ ସବୁଆଡ଼ୁ ପ୍ରଲୋଭନ ଆସିଲା । ବିଶେଷତଃ ଏକାଡ଼େମୀ ପରିଚାଳିତ ମହାବିଦ୍ୟାଳୟର ଶିକ୍ଷକମାନଙ୍କ ଦରମା ସହିତ ସମକକ୍ଷ ହୋଇପାରିଲା ନାହିଁ । ସ୍ୱାଡ଼େ ଆକାଶବାଣୀର ଶାଖା ପ୍ରଶାଖା ଏବଂ କଟକରେ ଟେଲିଭିଜନ ସ୍ଥାପନାରେ ନୂଆ ନୂଆ ଚାକିରିର ସୂତ୍ରପାତ ହେଲା । ଏପରି ଅବସ୍ଥାରେ ଆମର ଭଲ ଭଲ ଶିକ୍ଷକ ଯଥା— ଶ୍ରୀ ବାଳକୃଷ୍ଣ ଦାଶ, ଶ୍ରୀ ଭିକାରୀଚରଣ ବଳ ଇତ୍ୟାଦି ମହାବିଦ୍ୟାଳୟରେ ଯୋଗଦେଲେ । ରାଖାଲବାବୁ, ଜହ୍ନୀବାବୁ, ସୁନିଲବାବୁ ଇତ୍ୟାଦି ଆକାଶବାଣୀରେ ସ୍ଥାନ ପାଇଲେ । ମାୟାଧରବାବୁ, ରମଣୀବାବୁଙ୍କ ପରି ଶିକ୍ଷକ ଯଥାକ୍ରମେ ଦିଲ୍ଲୀ ଓ ମାନ୍ଦ୍ରାଜ ଚାଲିଗଲେ ଏବଂ କେଲୁବାବୁ ମଧ୍ୟ ଆଂଶିକ ଭାବରେ କାର୍ଯ୍ୟକଲେ । କେବଳ ଶ୍ରୀ ରଘୁନାଥ ଦତ୍ତ ପୁରାତନ ଶିକ୍ଷକ ହିସାବରେ ଆଜି ପର୍ଯ୍ୟନ୍ତ ଅଛନ୍ତି । ମଝିରେ ପାଞ୍ଚ ବର୍ଷ ଅନୁଷ୍ଠାନର ଯେଉଁ ପତନ ଘଟିଲା ତା ନଘଟିଥିଲେ ହୁଏତ ଆମର ସୁଚିନ୍ତିତ ଯୋଜନା ଅନୁଯାୟୀ ଗୋଟିଏ ଜନସାଧାରଣଙ୍କ ଦ୍ୱାରା ପରିଚାଳିତ ସଂସ୍ଥା ସରକାର ପରିଚାଳିତ ସଂସ୍ଥା ସହିତ କିପରି ଭାବରେ ସମକକ୍ଷ ହୋଇପାରେ ତାହା ଦେଖାଇପାରି ଥାଆନ୍ତୁ । କିନ୍ତୁ ଆମର ଦୁର୍ଭାଗ୍ୟ ଯେ ଏହା ସମ୍ଭବପର ହୋଇପାରିଲା ନାହିଁ । ଆମର ଅନୁରୋଧ ସତ୍ତ୍ୱେ ଶିକ୍ଷକମାନେ ମଧ୍ୟ ଆଉ ବେଶୀ ଦିନ ଧୈର୍ଯ୍ୟ ଧରି ପାରିଲେ ନାହିଁ । ସେହିପରି ରଙ୍ଗମଞ୍ଚର କାର୍ଯ୍ୟ ମଧ୍ୟ ଏହି ଗୃହକଳହ ଯୋଗୁ ବହୁତ ବାଧାପ୍ରାପ୍ତ ହେଲା; ନଚେତ୍ ମୋର ବମ୍ବେର ବନ୍ଧୁମାନଙ୍କର ଓ ଅନ୍ୟ ବନ୍ଧୁମାନଙ୍କର ଯାହା ଉତ୍ସାହ ଓ ସମର୍ଥନ ଥିଲା ଏ କାର୍ଯ୍ୟ କେବେଠୁଁ ସରିଯାଇଥାଆନ୍ତା । ଛାଡ଼ନ୍ତୁ, ପଛ କଥା ଭାବିଲେ କିଛି ମିଳିବ ନାହିଁ । ବର୍ତ୍ତମାନ ପଚିଶ ବର୍ଷ ପରେ ମୁଁ ସୁପରିଚାଳିତ ଛାତ୍ରୀ ନିବାସ ଓ ସୁସଜ୍ଜିତ ରଙ୍ଗମଞ୍ଚର ଭବିଷ୍ୟତ ବଂଶଧରମାନଙ୍କ ପାଇଁ ପ୍ରସ୍ତୁତ କରିଯାଉଛି । ଏଣିକି ସେମାନେ ମହାବିଦ୍ୟାଳୟ ପରିଚାଳନାକୁ ଭଲ ଭାବରେ ନଜର ଦିଅନ୍ତୁ । ଆଜି ମନ୍ଦିର ତୋଳା ସରିଛି, ଅଥଚ ଦେବତାଙ୍କ ସ୍ଥାପନା ଅପୂର୍ଣ୍ଣ ରହିଛି । ଏଣିକି ଆମବେଳ ସରିଲା । ଆପଣମାନଙ୍କ ବେଳ ଆସୁଛି । ସମସ୍ତେ ଯଦି ସମ୍ମିଳିତ ଉଦ୍ୟମ କରିବେ, ମୋର ବିଶ୍ୱାସ, ଆମ ରାଜ୍ୟରେ ନୁହେଁ ସାରା ଭାରତ ବର୍ଷରେ ଏପରିକି ଦେଶ ବିଦେଶରେ ମଧ୍ୟ ଏହା ଏକ ମହତ୍ ସାଂସ୍କୃତିକ ଅନୁଷ୍ଠାନ ହିସାବରେ ପାଇଥିବା ତାହାର ସ୍ଥାନ ଅବ୍ୟାହତ ରଖିବ ।

କଥା କହୁ କହୁ କଳାବିକାଶ କେନ୍ଦ୍ରର ପଚିଶ ବର୍ଷ ପୂରିଗଲା । ସ୍ୱପ୍ନ ପରି ଲାଗୁଛି । ମୋ ଜୀବନର ଶ୍ରେଷ୍ଠ ଯୌବନକାଳ ଏହି କାର୍ଯ୍ୟରେ କଟିଲା । ରାଜନୈତିକ

ସାମାଜିକ, ପାରିବାରିକ ଏପରିକି ଆଧ୍ୟାତ୍ମିକ ରୁଚିରୁ ମଧ୍ୟ ମୋତେ ଏହି କାରଣରୁ ଦୂରେଇ ଯିବାକୁ ପଡ଼ିଲା । ବ୍ୟବସାୟ କ୍ଷେତ୍ରରୁ କିମ୍ବା ଅର୍ଥ ପ୍ରଲୋଭନରୁ ମଧ୍ୟ ମୋତେ ଅଲଗା ରହିବାକୁ ପଡ଼ିଲା । ନିଜର ଏବଂ ନିଜ ସ୍ତ୍ରୀର ସ୍ୱାସ୍ଥ୍ୟ ପ୍ରତି ମଧ୍ୟ ଅବହେଳା କରିବାକୁ ପଡ଼ିଲା । ଏହିପରି ସବୁ ଜଞ୍ଜାଳରୁ ମୁକ୍ତ ରହି ଅବିରତ ସାଧନା ଫଳରେ ହିଁ ଆଜି କଳା ବିକାଶ କେନ୍ଦ୍ର ଏହି ସ୍ତରକୁ ଆସିଛି । ମୋ ପରି ଅନେକ ରାଜନୈତିକ ବନ୍ଧୁ, ଶିକ୍ଷକ, ଅଭିଭାବକ ଏପରିକି ଛାତ୍ରଛାତ୍ରୀ ମଧ୍ୟ ଅନୁଷ୍ଠାନର ଉନ୍ନତି ପାଇଁ କେତେ ଯେ ସାହାଯ୍ୟ କରିଛନ୍ତି ତାହାର କିଛି ମାପକାଠି ନାହିଁ । କେତେ ବାଧାବନ୍ଧନ, ସୁବିଧା ଅସୁବିଧା, ଖାଲଢ଼ିପ ଭିତରେ ଗତି କରିବାକୁ ପଡ଼ିଛି ତାହା ମଧ୍ୟ ଅଳ୍ପ ବହୁତ ସମସ୍ତେ ଜାଣନ୍ତି । ଭବିଷ୍ୟତର ବଂଶଧରମାନେ ଏସବୁ କଥା ଜାଣନ୍ତୁ, ହୃଦୟଙ୍ଗମ କରନ୍ତୁ ଏବଂ ଏହି ଅନୁଭୂତିରୁ କିଛି ଶିକ୍ଷା ଲାଭ କରନ୍ତୁ । ଏହିପରି ଭାବି କେନ୍ଦ୍ରର ପଚିଶ ବର୍ଷର ଇତିହାସ ଲିପିବଦ୍ଧ କରିବାର ଚେଷ୍ଟା କରିଛି । କୌଣସି ବନ୍ଧୁଙ୍କୁ ଯେପରି ଏହି ଲେଖାରେ ଦୁଃଖ ନଲାଗେ ତାହା ପ୍ରତି ମଧ୍ୟ ମୁଁ ଦୃଷ୍ଟି ଦେଇଛି । ଜାଣିଶୁଣି ଅନେକ ଜାଗାରେ ଅନେକଙ୍କର ନାମ ଉଲ୍ଲେଖ କରିନାହିଁ । ଆବଶ୍ୟକତା ଦୃଷ୍ଟିରୁ କେତେକ ନାମ ଉଲ୍ଲେଖ କରିଛି । ଏହାର ଅର୍ଥ ଏହା ନୁହେଁ ଯେ କେବଳ ଏତିକି ଛାତ୍ରଛାତ୍ରୀ, କର୍ମୀ, ଅଭିଭାବକ ଆମ ସହିତ ଜଡ଼ିତ ଥିଲେ । ହୁଏତ କେତେକ ସ୍ଥଳରେ ମୁଁ କେତେକ ନାମ ଉଲ୍ଲେଖ କରିବା ମଧ୍ୟ ଭୁଲିଯାଇଥିବି । ସେଥିପାଇଁ ମୋତେ ସେମାନେ କ୍ଷମା କରିବେ ନିଶ୍ଚୟ ।



# ମୋ କଥା

# କଳା ବିକାଶ କେନ୍ଦ୍ରର କଥା

( ଦ୍ୱିତୀୟ ଖଣ୍ଡ )

୧୯୭୭ରୁ ୧୯୮୧ ମସିହା ପର୍ଯ୍ୟନ୍ତ ମୋର ଓ କଳା ବିକାଶ କେନ୍ଦ୍ରର ଉତ୍‌ଥାନ ପତନର ଇତିହାସ

କେ. ଭି. କେ. ମାର୍ଗ
କଟକ-୭୫୩୦୦୧
ତା ୧ । ୯ । ୧୯୮୧

ବାବୁଲାଲ ଦୋଶୀ

# ମୋ କଥା

## କଳାବିକାଶ କେନ୍ଦ୍ରକଥା

### (ଦ୍ୱିତୀୟ ଖଣ୍ଡ)

କଳାବିକାଶ କେନ୍ଦ୍ରର ପଚିଶ ବର୍ଷର ଇତିହାସ ପ୍ରଥମ ଖଣ୍ଡରେ ପ୍ରକାଶ ପାଇଛି । ୧୯୭୭ ମସିହାର ଶେଷ ଭାଗରେ ପ୍ରକାଶିତ ଉତ୍ଥାନ ପତନର ଏକ ବିସ୍ତୃତ ବାସ୍ତବ ବିବରଣୀ ସେଥିରେ ସମ୍ବଳିତ କରାଯାଇଛି । ୧୯୭୭ରୁ ୧୯୮୧ ଏହି ପାଞ୍ଚବର୍ଷର କଥା ପୁଣି ଆପଣଙ୍କ ସମ୍ମୁଖରେ ଉପସ୍ଥାପିତ କରୁଛି ।

ଏହି ପାଞ୍ଚବର୍ଷ ଭିତରେ କେନ୍ଦ୍ର ଇତିହାସରେ ଓ ମୋ ଜୀବନରେ ଅଭାବ ଦୁଃଖଦାୟକ ଘଟଣାମାନ ଘଟିଯାଇଛି । ୧୯୭୪ ରୁ ୧୯୭୭ ମସିହା ମଧ୍ୟରେ ଘଟିଥିବା ଘଟଣାଠାରୁ ଏହା ଆହୁରି ବିଷାଦମୟ ଓ ଦୁଃଖଦାୟକ । ତେବେବି ଆମ୍ଭେମାନେ ବଞ୍ଚି ରହିଛୁ ଏବଂ କଳାବିକାଶ କେନ୍ଦ୍ର ମଧ୍ୟ ଯଥାସ୍ଥାନରେ ରହିଛି ।

ଗୋଟିଏ ଗୋଟିଏ ବର୍ଷର ଉନ୍ନତି ଅବନତି ମୋ ଜୀବନର ଗୋଟିଏ ଗୋଟିଏ କରୁଣ କାହାଣୀ । ଗୋଟିକ ପରେ ଗୋଟିଏ ବର୍ଣ୍ଣନା କରିବାକୁ ଯାଉଛି ।

୧୯୭୮ ମସିହା କେନ୍ଦ୍ରର ରୌପ୍ୟଜୁବୁଲି ସମ୍ବତ୍ସର । ବଡ଼ ଆଡ଼ମ୍ବରରେ ପାଳନ କରିବାର ଯୋଜନା ପ୍ରସ୍ତୁତ ହେଲା । ଏହି ରୌପ୍ୟ ଜୁବୁଲି ଅବସରରେ ଶ୍ରେଷ୍ଠ କାର୍ଯ୍ୟ ହେଲା କେନ୍ଦ୍ରର ବହୁ ଆକାଙ୍‌କ୍ଷିତ ରଙ୍ଗମଞ୍ଚ ନିର୍ମାଣ ଓ ସଜାସଜ କାର୍ଯ୍ୟ ଶେଷ କରିବାର ଶପଥ ଓ ତାହା ସଫଳତାର ସହ ସମାପ୍ତ । ରୌପ୍ୟ ଜୁବୁଲି ସପ୍ତାହର ପ୍ରଥମ ଦିବସରେ ଅର୍ଥାତ୍ ୧୯୭୭ ମସିହା ଜାନୁୟାରୀ ୧୪ ତାରିଖ ସକାଳ ଏକ ଶୁଭ ମୁହୂର୍ତ୍ତରେ ସେତେବେଳର ଉପରାଷ୍ଟ୍ରପତି ଶ୍ରୀ ବି. ଡି. ଜତିଙ୍କ ଦ୍ୱାରା ଏହି ରଙ୍ଗମଞ୍ଚ ଉଦ୍‌ଘାଟିତ ହେଲା । ଆଂଶିକ ସରକାରୀ ସାହାଯ୍ୟରେ ୧୯୬୨ରେ ଆରମ୍ଭ ହୋଇଥିବା ଏହି ରଙ୍ଗମଞ୍ଚର କାର୍ଯ୍ୟ ପ୍ରଥମ ୭୦,୦୦୦ ଟଙ୍କାର ଅଟକଳରେ ଆରମ୍ଭ ହୋଇ ଦୀର୍ଘ ୧୫ ବର୍ଷ ପରେ ଅର୍ଥାତ୍ ୧୯୭୭ର ପ୍ରଥମ ଭାଗରେ ତାହା ପ୍ରାୟ ପାଞ୍ଚଲକ୍ଷ ଟଙ୍କାକୁ ଟପିଗଲା । ୧୯୭୭ ମସିହାର ଶେଷ ଭାଗରେ ଅର୍ଥାତ୍ ରୌପ୍ୟ ଜୁବୁଲିର ଅବ୍ୟବହିତ ପୂର୍ବରୁ ଏହି କାର୍ଯ୍ୟ ଶେଷ କରିବାର ଶପଥ ନେଇ ଦେଖାଗଲା ଯେ ସାଜସଜ୍ଜା ସହିତ ପ୍ରାୟ ଆହୁରି ଛଅଲକ୍ଷ ଟଙ୍କା ଦରକାର ।

କେନ୍ଦ୍ରର ଶୁଭେଚ୍ଛୁମାନଙ୍କଠାରୁ ବିନା ସୁଧରେ ପ୍ରାପ୍ତ ଏକଲକ୍ଷ ଟଙ୍କା ଓ ଅନ୍ୟ ଉପାୟରେ ଦୁଇଲକ୍ଷ, ଏହିପରି ତିନିଲକ୍ଷ ଟଙ୍କା ଧାର ସ୍ୱରୂପ ଅଣାଗଲା ଏବଂ ନାନା କୌଶଳ ଅବଲମ୍ବନ କରି ରୌପ୍ୟ ଜୁବିଲିରେ ପ୍ରାପ୍ତ ତିନିଲକ୍ଷ ଟଙ୍କା ଆଦାୟ ହେଲା । ମିନି ଲଟେରୀ, ପୁରାତନ ଛାତ୍ରଛାତ୍ରୀମାନଙ୍କର ଦଶହଜାର ଟଙ୍କାର ସମ୍ମିଳିତ ଦାନ, କେନ୍ଦ୍ରର ନିଜର ଓ ବାହାର କଳାକାରମାନଙ୍କୁ ନେଇ ସାହାଯ୍ୟ ରଜନୀ, ଦୁଇଟି ଆକର୍ଷଣୀୟ ସ୍ମୃତିଗ୍ରନ୍ଥ ପ୍ରକାଶନରେ ବିଜ୍ଞାପନ ବାବଦ ଆଦାୟ ଓ ବମ୍ବେର ପୃଷ୍ଠପୋଷକମାନଙ୍କର ସାହାଯ୍ୟ ଏହାର ଅନ୍ତର୍ଭୁକ୍ତ ।

ରୌପ୍ୟ ଜୁବିଲି ସଫଳ କରିବାରେ ଶ୍ରୀମତୀ ସୁଧା ସୁନ୍ଦରରାଜନ, ଶ୍ରୀ ରଣଧୀର ଦାସ, ଶ୍ରୀ ପୁରଞ୍ଜନ ରାୟ ଓ ଶ୍ରୀ ଶ୍ୟାମବନ୍ଧୁ କରଙ୍କ ପରି ଶୁଭାକାଂକ୍ଷୀମାନଙ୍କର ନାମ ଉଲ୍ଲେଖଯୋଗ୍ୟ । ଦେହ ଅସୁସ୍ଥ ଥିଲେ ମଧ୍ୟ ମୋର ଚିରବନ୍ଧୁ ଶ୍ରୀ ବୈକୁଣ୍ଠନାଥ ମହାନ୍ତି କାନ୍ଧକୁ କାନ୍ଧ ମିଳାଇ ରୌପ୍ୟ ଜୁବିଲିକୁ ସଫଳ କରାଇବାରେ ସାହାଯ୍ୟ କଲେ ।

ଟଙ୍କାତ ଆଦାୟ ହେଲା, କାର୍ଯ୍ୟମଧ୍ୟ ଦ୍ରୁତଗତିରେ ଆରମ୍ଭ ହେଲା । ସବୁହେଲା, କିନ୍ତୁ କାର୍ଯ୍ୟ ଶେଷ କରିବାର ଉପାୟତ' ଆମ ହାତରେ ନାହିଁ । ଯେଉଁମାନେ ନିର୍ମାଣ କାର୍ଯ୍ୟ କରୁଥିଲେ ଏବଂ ଯେଉଁମାନେ ଏହାକୁ ସଜାସଜ୍ଜି କରିବା ପାଇଁ ଲାଗି ପଡ଼ିଥିଲେ ସେମାନଙ୍କ କାର୍ଯ୍ୟର ମଧ୍ୟ ମର୍ଯ୍ୟାଦା ଅଛି ।

ଆମ ଭାଗ୍ୟରୁ ହେଉ, କିମ୍ବା ଭଗବାନଙ୍କ କୃପାରୁ ହେଉ କଲିକତାର ଜଣେ ବିଶିଷ୍ଟ ମଞ୍ଚ ନିର୍ମାଣ ଶିଳ୍ପୀ ଶ୍ରୀ ଏସ୍. ଭଟ୍ଟାଚାର୍ଯ୍ୟ ଯୋଗକୁ ଆସି ଜୁଟିଗଲେ । ରଙ୍ଗମଞ୍ଚର ପ୍ରତ୍ୟେକ ଅଂଗ ଉପାଂଗ ଯଥା —ବିଦ୍ୟୁତ, ଆସନ, ଧ୍ୱନି ଏପରିକି ମଞ୍ଚସଜ୍ଜାର ପ୍ରସ୍ତୁତ କରାଇବା ଏବଂ ଠିକ୍ ସମୟରେ ଯଥା ସ୍ଥାନରେ ଉପସ୍ଥାପିତ କରିବାର ସବୁ ଭାର ସେ ନେଲେ । ଅଧିକାଂଶ ସରଞ୍ଜାମ କଲିକତା ଏବଂ ବିଭିନ୍ନ ଜାଗାରୁ ସଂଗ୍ରହ କରିବାକୁ ପଡ଼େ । ବେଳେ ବେଳେ ଟଙ୍କା ଜୁଟେନାହିଁ । ଟଙ୍କା ଜୁଟିଲେ କାରିଗର ଜୁଟନ୍ତି ନାହିଁ । କାରିଗର ଓ ଟଙ୍କା ଜୁଟିଲେ ବେଳେ ବେଳେ ସରଞ୍ଜାମ ଜୁଟେ ନାହିଁ । ସ୍ୱାଦେଶ ଶ୍ରୀ ରାଧାନାଥ ବାବୁଙ୍କ ଜରିଆରେ ରାଷ୍ଟ୍ରପତି ଶ୍ରୀ ଭି. ଭି. ଜଗିଙ୍କର ଗସ୍ତକ୍ରମ ଆସିଗଲା । ସେ ୧୯୭୭ ଜାନୁୟାରୀ ୧୪ ତାରିଖ ସକାଳ ପାଇଁ ସମୟ ଦେଲେ । ଅହୋରାତ୍ର କାର୍ଯ୍ୟ ଚାଲିଛି । କାହାକୁ ନିଦ ନାହିଁ ।

ଏମିତି ବେଳ ଆସିଗଲା ଯେ ଥରେ ମୋଛଡ଼ା ସମସ୍ତେ ଏପରିକି ଆମ କେନ୍ଦ୍ରର ସଭାପତି ମହାଶୟ ମଧ୍ୟ ଅବିଶ୍ୱାସ କଲେଯେ ଏକାମ ଠିକ୍ ସମୟରେ ସରିବ ନାହିଁ ଓ ଭଲବି ହେବ ନାହିଁ । ତେଣୁ ଏକାର୍ଯ୍ୟକୁ ଅନ୍ୟଦିନ ପାଇଁ ସ୍ଥଗିତ ରଖାଯାଉ । କିନ୍ତୁ ମୋର ବିଶ୍ୱାସ ଥିଲା ଏବଂ ଈଶ୍ୱରଙ୍କ କୃପାରୁ ଜାନୁୟାରୀ ୧୩

ତାରିଖ ରାତି ୨ଟା ବେଳେ କାମ ଶେଷ ହେଲା । ବହୁଲୋକ ଏଥିପାଇଁ ଯତ୍ନ ନେଇଛନ୍ତି, କିନ୍ତୁ ଭଟ୍ଟାଚାର୍ଯ୍ୟ ବାବୁଙ୍କର ଅଦମ୍ୟ ଉଦ୍ୟମ ପାଇଁ ସେ ବିଶେଷ ଅଭିନନ୍ଦନୀୟ ।

ଯାହାହେଉ, ପ୍ରାୟ ଏକହଜାର ସ୍ଥାନ ବିଶିଷ୍ଟ ଏହି ସୁସଜ୍ଜିତ ରଙ୍ଗମଞ୍ଚର କାର୍ଯ୍ୟ ଶେଷ କରି ଆମ୍ଭେମାନେ ବାହ୍ୱାବା ପାଇଲୁ, କିନ୍ତୁ ତିନିଲକ୍ଷ ଟଙ୍କା ଧାର ସ୍ୱରୂପ ଆଣିବା ଦ୍ୱାରା ଆମର ଅଣ୍ଟା ଏକୋବେଲକେ ଭାଙ୍ଗିଗଲା । ବିଧିବଦ୍ଧ ଯୋଜନା ନେଇ ଆମରଥ ଯେଉଁ ଦ୍ରୁତବେଗରେ ଗତି କରୁଥିଲା ତାହାର ଲକ୍ଷ୍ୟକୁ ସେ ପହଞ୍ଚି ପାରିଥାଆନ୍ତା, ଯଦି ୧୯୬୪ରୁ ୧୯୬୬ ଏହି ଦୁଇବର୍ଷ ଗୃହ କଳହରେ ତାହାର ଗତି ଅବରୋଧ ହୋଇ ନ ଥାଆନ୍ତା । ଆମକୁ ଏତେ ଅର୍ଥ ମଧ୍ୟ ଧାର ସୂତ୍ରରେ ସଂଗ୍ରହ କରିବାକୁ ପଡ଼ି ନଥାଆନ୍ତା ଏବଂ ଆମେ ନିଶ୍ଚିତ ଭାବରେ ପରବର୍ତ୍ତୀ ଯୋଜନାମାନ ଠିକ୍ ସମୟରେ କାର୍ଯ୍ୟାନ୍ୱିତ କରିପାରି ଥାଆନ୍ତୁ ।

ଆଗରୁ ଯାହା ଘଟିଛି ଏବଂ ସାଧାରଣତଃ ବଡ଼ ବଡ଼ ଅନୁଷ୍ଠାନରେ ଯାହା ଘଟେ—ମାନେ କୌଣସି ଗୋଟିଏ ବଡ଼ କାମ କରିବାକୁ ଗଲେ ଗୃହ କଳହର ସୂତ୍ରପାତ ହୁଏ କିମ୍ବା ବୃଦ୍ଧି ପାଏ । ଅନୁଷ୍ଠାନରେ ବହୁ ମତାବଲମ୍ବୀ ଲୋକ ବହୁସ୍ୱାର୍ଥ ନେଇ ଆସନ୍ତି । ନିଃସ୍ୱାର୍ଥ ଭାବରେ କାର୍ଯ୍ୟ କରୁଥିବା ବ୍ୟକ୍ତି ଶତକଡ଼ା ପାଞ୍ଚ ପାଇବା ମୁସ୍କିଲ । କାହାର ପିଲା କେନ୍ଦ୍ରରେ ଶିଖୁଛି, କାହାର ପିଲା କେନ୍ଦ୍ର ହଷ୍ଟେଲରେ ରହୁଛି, କିଏ କିଏ ହୁଏତ କେନ୍ଦ୍ରର ବିଭିନ୍ନ ବିଭାଗରୁ କିଛି ଅର୍ଥ ପାଉଛନ୍ତି କିମ୍ବା ଅନ୍ୟ ଦିଗରେ ଲାଭବାନ ହେଉଛନ୍ତି, କିଏବା ନିଜର ନାମ କରିବା ସକାଶେ ଅନୁଷ୍ଠାନକୁ ଆସୁଛନ୍ତି । ଏହିପରି ଭିନ୍ନ ଭିନ୍ନ ମତାବଲମ୍ବୀ ପାଞ୍ଚ ଭାଇକୁ ନେଇ କାର୍ଯ୍ୟ କରିବା ଦୁଷ୍କର । ରୌପ୍ୟ ଜୁବୁଲି ସମୟରେ ଏପରି ଅନେକ ଘଟଣା ଘଟିଲା ଏବଂ ଏହିପରି ଗୋଷ୍ଠୀର ବହୁଲୋକ ନାନା ଗୃହ କଳହରେ ମାତିଲେ । କିନ୍ତୁ ଦୁର୍ଭାଗ୍ୟର କଥା, ଯେଉଁମାନଙ୍କର କିଛି ସ୍ୱାର୍ଥ ନାହିଁ ଏବଂ ଯେଉଁମାନେ କେନ୍ଦ୍ର ପ୍ରତି ସମ୍ପୂର୍ଣ୍ଣ ଅନୁଗତ, ସେମାନଙ୍କ ମଧ୍ୟରୁ ମଧ୍ୟ କେତେକ ବ୍ୟକ୍ତି ସାମାନ୍ୟ ସାମାନ୍ୟ କଥା ନେଇ ରୌପ୍ୟ ଜୁବୁଲିରେ ଯଥୋଚିତ ସହଯୋଗ କଲେନାହିଁ । ଆମର ସଭାପତି ଜଷ୍ଟିସ ହରିହର ମହାପାତ୍ର ଯାହାଙ୍କୁ ମୁଁ ପିତୃ ତୁଲ୍ୟ ସମ୍ମାନ ଦେଖାଏ ଓ ମୋର ଅନ୍ତରଙ୍ଗ ବନ୍ଧୁ ଶ୍ରୀ ନୀଳମାଧବ ବୋଷ ଯେକି କେନ୍ଦ୍ର ଆରମ୍ଭରୁ ଆଜିଯାଏ କେନ୍ଦ୍ରର ସୁଖଦୁଃଖରେ ଭାଗୀ, ତା ଛଡ଼ା ଗୁରୁ କେଳୁଚରଣ ମହାପାତ୍ର ଯାହାଙ୍କ ଯୋଗୁ ଆଜି ଓଡ଼ିଶୀ ନୃତ୍ୟ ବିଶ୍ୱ ବିଖ୍ୟାତ ହୋଇପାରିଛି ଏବଂ ଅନୁଷ୍ଠାନର ସକଳ ଶୁଭାକାଂକ୍ଷୀ ବନ୍ଧୁ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାସ ଓ ମୁଁ ଯାହାଙ୍କୁ ନିଜର ପରିବାରରେ ଅନ୍ତର୍ଭୁକ୍ତ କରିଛି, ସେପରି ଗତ ପନ୍ଦର ବର୍ଷ ହେଲା ମୋ ସହିତ ଚାଲିଆସୁଥିବା, କେବଳ

କେନ୍ଦ୍ରର ନୁହେଁ ମୋର ଘରସଂସାର ଏବଂ ଦୋକାନର ବଣିଜ ସହିତ ସମ୍ପୂର୍ଣ୍ଣ ସମ୍ପୃକ୍ତ ଏପରି ବନ୍ଧୁ ଶ୍ରୀ ପ୍ରତାପ କୁମାର ଚୌଧୁରୀ ମଧ୍ୟ ରୌପ୍ୟ ଜୁବିଲି ଏବଂ ତା ପରବର୍ତ୍ତୀ ବର୍ଷମାନଙ୍କରେ ମତ ପାର୍ଥକ୍ୟ କିମ୍ବା ସାମାନ୍ୟ ଭୁଲ ବୁଝାମଣା ଯୋଗୁ କେନ୍ଦ୍ର ପ୍ରତି ଉଦାସୀନ ହେଲେ । ଅବଶ୍ୟ ସେମାନେ ଅନୁଷ୍ଠାନର ଶୁଭାକାଂକ୍ଷୀ ଥିବାରୁ ଏବଂ ମୋର ମଧ୍ୟ ମଙ୍ଗଳାକାଂକ୍ଷୀ ଥିବାହେତୁ ପୁଣି ନିଜ ପରିବାରକୁ ଫେରି ଆସିଲେ ।

ଉପରୋକ୍ତ କାରଣ ହେତୁ କେତେକ ସ୍ୱାର୍ଥପର ଲୋକ ସବୁଦିନ ପାଇଁ କେନ୍ଦ୍ରରୁ ଓହରି ଗଲେ । କିନ୍ତୁ ଘୋର ଅନ୍ଧକାର ଭିତରେ ଆମେ ଆଲୋକର ସନ୍ଧାନ ମଧ୍ୟ ପାଇଛୁ । ବହୁ ପୁରାତନ ଛାତ୍ର ଛାତ୍ରୀ, ମୀନାବଜାରର ପୁରାତନ ସଭ୍ୟସଭ୍ୟା, ଅଭିଭାବକ ଏବଂ କଳାପ୍ରେମୀ ଆସି ଏହି ରୌପ୍ୟ ଜୁବିଲି ଅବସରରେ କେନ୍ଦ୍ରରେ ଯୋଗ ଦେଲେ ଏବଂ ଆଗରୁ ଯେଉଁମାନେ ଯୋଗ ଦେଇଥିଲେ ସେମାନେ ସମ୍ପୂର୍ଣ୍ଣ ଭାବରେ ଜଡ଼ିତ ହେଲେ । ତନ୍ମଧ୍ୟରେ ଡକ୍ଟର ଶୈଳେଶ୍ୱର ନନ୍ଦ, ସର୍ବଶ୍ରୀ ନରେନ୍ଦ୍ର-ଚନ୍ଦ୍ର ପ୍ରଧାନ, ଅରକ୍ଷିତ ପଶାୟତ, ଗୋପୀନାଥ ସାହୁ, ତୁଳସୀ ଚରଣ ପଟ୍ଟନାୟକ, ରବୀନ୍ଦ୍ରନାଥ ପଟ୍ଟନାୟକ, ରାମକୃଷ୍ଣ ତ୍ରିପାଠୀ, ଡକ୍ଟର ମନୋରଞ୍ଜନ ମୂର୍ତ୍ତି, ରାମହରି ମିଶ୍ର, ସୂର୍ଯ୍ୟପ୍ରକାଶ ଖାନସାମା, ସୁଷମା ଦେବୀ, ରାଧାମୋହନ ସାହୁ, ଦେବେନ୍ଦ୍ର କୁମାର ଦାସ, ମାୟାଧର ସାହୁ, ଲଳିତମୋହନ ରଥ, ବିଜୟ କୁମାର ଅଗ୍ରୱାଲ, ବୀଣା ମହାନ୍ତି, ଶୈଳବାଳା ମହାନ୍ତି, ପ୍ରଫୁଲ୍ଲ କୁମାର ସିଂହ, ରଶ୍ମିକାନ୍ତ ପାରେଖ, ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ ଅନ୍ୟତମ । କଟକ ରୋଟାରୀ କ୍ଲବର ଅଧିକାଂଶ ସଭ୍ୟ ଅନୁଷ୍ଠାନ ପ୍ରତି ଆକୃଷ୍ଟ ହୋଇ ଆସିଲେ । ତନ୍ମଧ୍ୟରେ ଶ୍ରୀ ରାଧିକାପ୍ରସାଦ ନନ୍ଦ ଓ ଶ୍ରୀ ସୁକୁମାର ସେନ ଅନ୍ୟତମ ।

ଏହି ଅବସରରେ ପୁଣି ଡକ୍ଟର ସଦାଶିବ ମିଶ୍ର, ଆଇ.ଜି. ଶ୍ରୀ ନରସିଂହ ସ୍ୱାଇଁ, ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି, ଶ୍ରୀମତୀ ଉମେଶ୍ୱରୀ ସୁଅଁ, ଶ୍ରୀ ଘନଶ୍ୟାମ ସୁନ୍ଦର ଦାସ ଓ ଡକ୍ଟର ରାଧାନାଥ ରଥଙ୍କ ପରି କେତେକ ବନ୍ଧୁ କେନ୍ଦ୍ର କାର୍ଯ୍ୟରେ ସମ୍ପୂର୍ଣ୍ଣ ଜଡ଼ିତ ହୋଇଗଲେ ।

କେନ୍ଦ୍ର ପ୍ରାରମ୍ଭରୁ ଯେଉଁ ଅନୁଷ୍ଠାନ କିମ୍ବା ବ୍ୟକ୍ତି ବିଶେଷଙ୍କ ସହିତ ଆମର ଘନିଷ୍ଠ ସମ୍ପର୍କ ରହିଛି ସେପରି କଲିକତା Children's Little Theatreର ପ୍ରତିଷ୍ଠାତା ଶ୍ରୀ ସମର ଚାଟାର୍ଜୀ ଓ ତାଙ୍କ ଦଳ, ନରେନ୍ଦ୍ରପୁର କଳାବିକାଶ କେନ୍ଦ୍ରର ଶ୍ରୀ ଭଗବାନ ସାହୁ ଏବଂ ତାଙ୍କ ଦଳ, କଥକ ବିଶାରଦା କୁମାରୀ ବନ୍ଦନା ସେନ ରୌପ୍ୟ ଜୁବିଲି କାର୍ଯ୍ୟକ୍ରମରେ ଆସି ସେମାନଙ୍କର କଳା କୃତିତ୍ୱ ପ୍ରଦର୍ଶନ କଲେ ଏବଂ କେନ୍ଦ୍ର ତରଫରୁ ମଧ୍ୟ ସେମାନଙ୍କୁ ଉଚ୍ଚ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଗଲା ।

ରୌପ୍ୟ ଜୁବିଲିର ବହୁବର୍ଷ ଆଗରୁ ପ୍ରତିବର୍ଷ ବାର୍ଷିକ ଉତ୍ସବ ସମୟରେ କେନ୍ଦ୍ରର ଶିକ୍ଷକ, ଛାତ୍ରଛାତ୍ରୀ ଏବଂ ଅଭିଭାବକଙ୍କ ମଧ୍ୟରୁ କେତେକଙ୍କୁ ସମ୍ମାନିତ କରାଯାଏ । ୧୯୭୬ ମସିହାରେ ପ୍ରଥମ କରି ଗୁରୁ କେଳୁଚରଣ ମହାପାତ୍ର, ଶ୍ରେଷ୍ଠ ଛାତ୍ରୀ କୁଙ୍କୁମ ଓ ଅଭିଭାବକଙ୍କ ମଧ୍ୟରୁ ସର୍ଦ୍ଦାର ଅମର ସିଂହ ଏହିପରି କେତେକ ବ୍ୟକ୍ତିଙ୍କୁ ସମ୍ମାନିତ କରାଗଲା ଏବଂ ବହୁ ବର୍ଷ ପର୍ଯ୍ୟନ୍ତ ଏ ପ୍ରଥା ଚାଲୁ ରହିଲା । ଆମ କେନ୍ଦ୍ରର ପରିବାର ବର୍ଗ ଏତେ ବଡ଼ ଏବଂ ଏହାର ପରିସର ଏତେ ବିଶାଳ ଯେ ରୌପ୍ୟ ଜୁବିଲି ସମୟରେ ବ୍ୟକ୍ତିବିଶେଷ ଭାବେ କାହାରିକୁ ସମ୍ମାନିତ କରାଗଲା ନାହିଁ ଏବଂ କେନ୍ଦ୍ରର ପ୍ରତିନିଧି ହିସାବରେ କେନ୍ଦ୍ରର ଛାତ୍ରଛାତ୍ରୀ ସମ୍ବର୍ଦ୍ଧନା ଜଣାଇ ମୋତେ ଦଶହଜାର ଟଙ୍କାର ଥଳି ଭେଟି ଦେଲେ । ଅବଶ୍ୟ ମୁଁ ନିଜର ଦଶହଜାର ଟଙ୍କା ମିଶାଇ ସମୁଦାୟ କୋଡ଼ିଏ ହଜାର ଟଙ୍କା କେନ୍ଦ୍ରକୁ ଫେରାଇ ଦେଲି । କିନ୍ତୁ କେତେକ ଲୋକ ଏଥିପାଇଁ ଈର୍ଷାନ୍ୱିତ ହେଲେ । ଏ ବିଷୟରେ ମଧ୍ୟ କେତେକ ଆଲୋଚନା ଚାଲିଲା । ବମ୍ବେର ଆମର କେତେକ ପୃଷ୍ଠପୋଷକ ଖାସ ବମ୍ବେରୁ ସେଥିପାଇଁ ଆସିଲେ ଏବଂ ମୋ ଜରିଆରେ ସେମାନେ ପ୍ରତ୍ୟେକ ପାଞ୍ଚ ହଜାର ଟଙ୍କା କରି ଦାନ କଲେ ଏବଂ ମୋତେ ଗୋଟିଏ ଶାଲ ଉପହାର ଦେଲେ । ଏହାକୁ ମଧ୍ୟ କେହି କେହି ପସନ୍ଦ କଲେ ନାହିଁ ।

ମଇ ୩୧ ତାରିଖ ମୋର ଜନ୍ମଦିନ । କେନ୍ଦ୍ରର ଛାତ୍ରଛାତ୍ରୀ ଏବଂ ଯେଉଁ ବନ୍ଧୁମାନେ ମୋତେ ଭଲ ପାଆନ୍ତି ସେମାନେ ଏହି ଦିନକୁ ଆଦରର ସହିତ ପାଳନ କରନ୍ତି । ଏହାଦ୍ୱାରା ମୁଁ ଦେଖେ ଯେ କେନ୍ଦ୍ରର ଏକତା ବଢ଼େ । ବେଳେବେଳେ କେନ୍ଦ୍ରକୁ ଆର୍ଥିକ ସାହାଯ୍ୟ ମଧ୍ୟ ଆସେ । ମୁଁ ଏହାକୁ ସହଜ ଓ ସରଳ ଭାବରେ ନିଏ, କିନ୍ତୁ ଯାହାଦ୍ୱାରା ମଧ୍ୟ କେତେକ ଲୋକଙ୍କ ମନରେ ଈର୍ଷା ଜାତ ହେଲା । ୧୯୬୧ ମସିହାରେ ମୋର ଷାଠିଏ ବର୍ଷ ପୂରିକି ଏବଂ ତଦୁପଲକ୍ଷେ ଗୋଟିଏ ସ୍ୱତନ୍ତ୍ର କମିଟି ଗଢ଼ାଗଲା ଏବଂ ମୋତେ ଗୋଟିଏ ଷାଠିଏ ହଜାର ଟଙ୍କାର ଥଳୀ ଭେଟି ଦେବାର ଘୋଷଣା କରାଗଲା ଏବଂ କେତେକ ଲୋକ ସାଙ୍ଗେ ସାଙ୍ଗେ ଟ ୫୦୦ କରି ମଧ୍ୟ ଦେଲେ । ମୁଁ ମଧ୍ୟ ଘୋଷଣା କଲି ଯେ ମୁଁ ଏହି ସମୟ ମଧ୍ୟରେ ନିଜେ ଷାଠିଏ ହଜାର ଟଙ୍କା ଆଦାୟ କରି ଦେବି । ସୁତରାଂ ଏକଲକ୍ଷ କୋଡ଼ିଏ ହଜାର ଟଙ୍କା ମୁଁ କେନ୍ଦ୍ରକୁ ଦେବି । ଏ ବିଷୟରେ ମଧ୍ୟ କେତେକ ମହଲରେ ସମାଲୋଚନା ହେଲା ଏବଂ ସେହିଦିନଠାରୁ ମୁଁ ଏପରି ଜନ୍ମଦିନ ପାଳନ କରିବା ପାଇଁ ସମସ୍ତଙ୍କୁ ନିରୁତ୍ସାହ କଲି ଏବଂ ଯେଉଁ ଟଙ୍କା ଆଦାୟ ହୋଇଥିଲା ତାହା ଦାତା ମାନଙ୍କୁ ଫେରସ୍ତ କରାଗଲା । ଭଗବାନଙ୍କ ଦୟାରୁ ପାଞ୍ଚ ଜଣ ଲୋକ ମୋତେ ଜାଣିଛନ୍ତି ଏବଂ ପଚାରୁଛନ୍ତି । ସୁତରାଂ ନାମ କରିବାର ଲାଳସା ନଥିଲା । କେବଳ ଏଥିରେ ମଧ୍ୟ କେନ୍ଦ୍ରର କିଛି ମିଳିବ, ଏହି ଥିଲା ମୂଳମନ୍ତ୍ର ।

ଏହି ରୌପ୍ୟ ଜୁବିଲି ସମୟରେ ମୋର ସ୍ତ୍ରୀ ଏବେ ବେଗ୍ରମ ହେଲେ ଯେ ସେ କୌଣସି କାର୍ଯ୍ୟକ୍ରମରେ ଯୋଗ ଦେଇ ପାରିଲେ ନାହିଁ, କିନ୍ତୁ ଶୁଭେଚ୍ଛା ସ୍ୱରୂପ ତାଙ୍କର ଅଳଙ୍କାରପତ୍ର କେନ୍ଦ୍ରକୁ ଦାନ କରିଥିଲେ ।

ଡକ୍ଟର ବଂଶୀଧର ପଣ୍ଡା, ଶ୍ରୀ ନାରାୟଣ ଦାସ ସରାଫ, ଶ୍ରୀମତୀ ଉମେଶ୍ୱରୀ ସୁଥ୍, ଶ୍ରୀ ନଗୀନ ଭାଇ ପାରେଖ ଏବଂ ଶ୍ରୀ ଖଟାଉ ସୁନ୍ଦର ଦାସଙ୍କ ପରି ବହୁ ପୃଷ୍ଠପୋଷକ ରୌପ୍ୟ ଜୁବିଲି ସମୟରେ ଅନୁଷ୍ଠାନକୁ ସକଳ ପ୍ରକାର ସାହାଯ୍ୟ କରିବାରୁ ଓ ଆମ ରାଜ୍ୟର ସେତେବେଳର ମୁଖ୍ୟମନ୍ତ୍ରୀ ଓ ଅନ୍ୟ ମନ୍ତ୍ରୀମାନେ ଓ ବହୁ ବିଶିଷ୍ଟ କଳାପ୍ରେମୀମାନେ ଏ ସମ୍ବନ୍ଧରେ ନାନା ସହାନୁଭୂତି ଦେଖାଇବାରୁ ୧୯୭୭ ଜାନୁୟାରୀ ୧୪ ରୁ ୨୦ ଏପରି ସାତଦିନର କାର୍ଯ୍ୟ ସୁରୁଖୁରୁରେ ସମ୍ପନ୍ନ ହେଲା ଏବଂ ଆମ୍ଭେମାନେ ନିଶ୍ୱାସ ମାରିଲୁ ।

ବହୁ ଉତ୍ସାହ ଓ ଉଦ୍ଦୀପନା ନେଇ ଅନେକ ହିତୈଷୀ ବନ୍ଧୁମାନେ କେନ୍ଦ୍ର କାର୍ଯ୍ୟରେ ଆଗ୍ରହ ଦେଖାଇବାରୁ ଆମ୍ଭେମାନେ ପୁଣି ରୌପ୍ୟ ଜୁବିଲି ଉଦ୍ଯାପନ ଉତ୍ସବ କରିବାର ଏକ ପରିକଳ୍ପନା କଲୁ ଏବଂ ଏହି ବର୍ଷରେ ଓଡ଼ିଆ ନାଟକ ଶତବାର୍ଷିକୀ ପଡ଼ୁଥିବାରୁ କେନ୍ଦ୍ର ତରଫରୁ ମହା ସମାରୋହରେ ଓଡ଼ିଆ ନାଟକ ଶତବାର୍ଷିକୀ ପାଳନ କରାଗଲା । ଏହି ଅବସରରେ ଅନୁଷ୍ଠାନ ତରଫରୁ ପ୍ରାୟ କୋଡ଼ିଏ ଜଣ ନାଟକର ବିଭିନ୍ନ ବିଭାଗରେ କୃତୀ କଳାକାର ଓ ଶିଳ୍ପୀ ମାନଙ୍କୁ ସମ୍ବର୍ଦ୍ଧନା ଜଣାଇଲୁ ଏବଂ ସେମାନଙ୍କୁ ଅନୁଷ୍ଠାନ ତରଫରୁ ନାନାବିଧ ଉପହାରରେ ବିଭୂଷିତ କରାଗଲା । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ସର୍ବଶ୍ରୀ କାର୍ତ୍ତିକ କୁମାର ଘୋଷ, ମାଷ୍ଟର ମାଣିଆ, ଗୋପାଳ ଛୋଟରାୟ, ସାମୁଏଲ ସାହୁ (ବାବି), ନରେଶ ଚନ୍ଦ୍ର ସରକାରଙ୍କ ପରି ବହୁ କଳାକାର ଓ ଶିଳ୍ପୀ ଏମାନଙ୍କ ମଧ୍ୟରେ ଅନ୍ୟତମ ।

ଏହି ଓଡ଼ିଆ ନାଟକ ଶତବାର୍ଷିକୀ ଉତ୍ସବରେ ଓଡ଼ିଆ ନାଟକର ଜନକ ସ୍ୱର୍ଗତଃ ଜଗମୋହନ ଲାଲଙ୍କୁ ଗଭୀର ଶ୍ରଦ୍ଧା ଜ୍ଞାପନ କରାଗଲା । ଗତ ପଚିଶ ବର୍ଷର ବିଭିନ୍ନ ଲେଖକମାନଙ୍କ ରଚନାରୁ ପାଞ୍ଚୋଟି ସମ୍ପୂର୍ଣ୍ଣ ନାଟକ ମଞ୍ଚସ୍ଥ କରାଗଲା । କଟକ ସହର ହାଇସ୍କୁଲ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଏକାଙ୍କିକା ପ୍ରତିଯୋଗିତା କରାଗଲା । ଆମ ରାଜ୍ୟସ୍ତରୀୟ ମହାବିଦ୍ୟାଳୟ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଗତ ଏକଶତ ବର୍ଷର ନାଟକ ଉପରେ ପ୍ରବନ୍ଧ ପ୍ରତିଯୋଗିତା କରାଗଲା । ଗତ ଏକଶତ ବର୍ଷରେ ଓଡ଼ିଆ ରଙ୍ଗମଞ୍ଚର ଉନ୍ନତି ବିଷୟ ଉପରେ ଏକ ଆଲୋଚନାଚକ୍ରର ଆୟୋଜନ କରାଯାଇଥିଲା । ଏହିପରି ବହୁ କାର୍ଯ୍ୟକ୍ରମ ଏହାର ଅନ୍ତର୍ଭୁକ୍ତ କରାଯାଇ ସହସ୍ରାଧିକ କଳାକାର-ମାନଙ୍କ ସମାବେଶରେ ଏହା ସୁରୁଖୁରୁରେ ସମ୍ପନ୍ନ ହେଲା ।

ଉତ୍କଳମଣି ଗୋପବନ୍ଧୁ ଦାଶଙ୍କର ଶତବାର୍ଷିକୀ ମଧ୍ୟ ଏହି ସମୟରେ ପଡ଼ୁଥିବାରୁ ତାହା ମଧ୍ୟ ଅନୁଷ୍ଠାନ ତରଫରୁ ବିଧିବଦ୍ଧ ଭାବରେ ପାଳିତ ହୋଇଥିଲା ।

ନାଟକ ବିଭାଗରେ ଏହି ଦୁଇବର୍ଷ ସର୍ବୋଚ୍ଚ ଉନ୍ନତିର ବର୍ଷ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଆ ଶତବାର୍ଷିକୀ ଉତ୍ସବ ବ୍ୟତୀତ ଆଲ୍ଲାବାଦରେ ଆୟୋଜିତ ବହୁଭାଷୀ ନାଟିକା ପ୍ରତିଯୋଗିତାରେ ଆମ୍ଭେମାନେ ଶ୍ରେଷ୍ଠ ସ୍ଥାନ ଅଧିକାର କରି ନଟରାଜ ଫଲକ ଓ ଅନ୍ୟାନ୍ୟ ପୁରସ୍କାର ପାଇଲୁ । ସେହିପରି ରାଉରକେଲାରେ ଆୟୋଜିତ ନାଟକ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ସର୍ବଶ୍ରେଷ୍ଠ ପୁରସ୍କାର ବିଜେତା ହେଲୁ ।

ଏହାଦ୍ୱାରା ଅନୁଷ୍ଠାନର ଖ୍ୟାତି ଓ ସମ୍ମାନ ଅନେକ ଗୁଣରେ ବର୍ଦ୍ଧିତ ହେଲା । କିନ୍ତୁ ନିୟତିର ବିଧାନକୁ ପରିବର୍ତ୍ତନ କରିବ କିଏ ? ଏହି ସମୟ ଭିତରେ ଅନୁଷ୍ଠାନର ବହୁ ପୃଷ୍ଠପୋଷକ, ମୁରବି ଓ କର୍ମୀ ଆମମାନଙ୍କୁ ଛାଡ଼ି ଚାଲିଗଲେ । ୧୯୭୭ ଓ ୧୯୭୮ ଏହି ଦୁଇବର୍ଷ ଭିତରେ କେନ୍ଦ୍ରର ପ୍ରଥମ ସଭାପତି ଡାକ୍ତର ପ୍ରାଣକୃଷ୍ଣ ପରିଜା, ଅନୁଷ୍ଠାନର ପ୍ରଥମ ଯୁଗ୍ମ ସମ୍ପାଦକ ଓ ପରବର୍ତ୍ତୀକାଳରେ ଉପସଭାପତି ଶ୍ରୀ ଆର୍ତ୍ତତ୍ରାଣ ନନ୍ଦ, ଆମ ଗୃହ ନିର୍ମାଣର ପରିଚାଳକ ଶ୍ରୀ ଦାଶରଥୀ ବେହେରା, ଆମର ପୃଷ୍ଠପୋଷକ କମ୍ରେଡ଼ ଶ୍ରୀ ଅନନ୍ତରାୟ ସୁପାରିଓ୍ୱାଲ ଓ କବିଚନ୍ଦ୍ର କାଳୀ ଚରଣ ପଟ୍ଟନାୟକ, କେନ୍ଦ୍ରର ସ୍ଥାପକ ସଭ୍ୟ ଶ୍ରୀ ଦୟାନିଧି ଦାସ ଏବଂ ସର୍ବୋପରି ମୋ ସ୍ତ୍ରୀ ମଧ୍ୟ ଏହି ସମୟରେ ଚାଲିଗଲେ । ଏମାନେ ସମସ୍ତେ ଏ ସଂସାର ଛାଡ଼ି ସବୁଦିନ ପାଇଁ ଚାଲିଗଲେ । କିନ୍ତୁ ଆଗରୁ ମୁଁ ବର୍ଣ୍ଣନା କରିଛି ଯେ ସେପରି ଅସ୍ଥାୟୀ ଭାବରେ ମଧ୍ୟ ଅନେକ କାରଣରୁ କେନ୍ଦ୍ର ପରିବାରର କେତେକ ଲୋକ କେନ୍ଦ୍ରପ୍ରତି ବିମୁଖ ହେଲେ । ତଦ୍ୱାରା ଅନୁଷ୍ଠାନର ଅନେକ କ୍ଷତି ଘଟିଲା ।

## ଚଳଚ୍ଚିତ୍ରରେ ମୋର ପୁନଃ ପ୍ରବେଶ—

୧୯୭୩ ରେ ଗୁଜରାଟୀ ସମାଜର ରୌପ୍ୟ ଜୁବିଲି ଓ ୧୯୭୮ ରେ କଳାବିକାଶ କେନ୍ଦ୍ରର ରୌପ୍ୟ ଜୁବିଲି ଏହିପରି ଦୁଇଟି ବଡ଼ କାମ ହାତରେ ଥିବାରୁ ମୁଁ ମୋର ଚଳଚ୍ଚିତ୍ର ବ୍ୟବସାୟ ପ୍ରାୟ ଦଶବର୍ଷ ବନ୍ଦ କରି ଦେଲି । କେନ୍ଦ୍ରର ରୌପ୍ୟ ଜୁବିଲି ପରେ ଟିକିଏ ସମୟ ମିଳିବାରୁ ମୋର ପୂର୍ବ ଶପଥ ମନେ ପଡ଼ିଲା । ପ୍ରଥମ ଖଣ୍ଡରେ ମୁଁ ଉଲ୍ଲେଖ କରିଛି ଯେ ଆମ୍ଭେମାନେ କେତେକ ବନ୍ଧୁ ପାଞ୍ଚୋଟି ଓଡ଼ିଆ ଛବି ନିର୍ମାଣ କରିବୁ ବୋଲି ଶପଥ ନେଇଥିଲୁ । ସୁତରାଂ ମୁଁ ପଞ୍ଚମ ଚଳଚ୍ଚିତ୍ର

ଏବେ ସେ କଟକର ବୋର୍ଡ଼ ହାଇସ୍କୁଲ୍‌ରେ ସ୍ଵୀକାର କରୁଥିଲେ, କିନ୍ତୁ ହଠାତ୍ ଅନୁଷ୍ଠାନ ସହିତ ଜଡ଼ିତ ହେବା ପୂର୍ବରୁ ସେ କର୍କଟ ରୋଗରେ ପୀଡ଼ିତ ହୋଇ ଦେହତ୍ୟାଗ କଲେ । ସେପରି ବନ୍ଧୁଙ୍କୁ ପୁନଃ ପାଇବାର ଆଉ ଆଶା ନାହିଁ । ସବୁଦିନ ପାଇଁ ତାଙ୍କୁ ହରାଇଲୁ ।

ବମ୍ବେରେ ରହି ସୁପାରଓ୍ଵାଲା ଆମ୍ଭମାନଙ୍କୁ କେତେ ଯେ ସାହାଯ୍ୟ କରିଛନ୍ତି । ସେ ଚାଲିଯିବାରୁ ବମ୍ବେର ବାଟମଧ୍ୟ ଆମର ସବୁଦିନ ପାଇଁ ବନ୍ଦ ହୋଇଗଲା ।

ସାଧୁଙ୍କ କଥା ନମାନିବାରୁ ଫଳ ଏଇଆ ହେଲା ଯେ ମୋର ସ୍ତ୍ରୀଙ୍କୁ ମଧ୍ୟ ମୁଁ ହରାଇଲି ଏବଂ ସଂସାରରେ ଏକା ପଡ଼ିଗଲି ।

ବିଷୟାନ୍ତରର ପରେ ପୁଣି ମୁଁ ଚଳଚ୍ଚିତ୍ର କଥା କହୁଛି । ନାନା ଘଟଣା ଘଟିବାରୁ ମଥୁରବିଜୟ ସୁଟିଂରେ ଘୋର ବାଧା ଘଟିଲା । ପ୍ରଥମ ନିର୍ଦ୍ଦେଶକ କଲିକତାର ଶ୍ରୀ ଅମିତ ମୈତ୍ର ସୁଚାରୁ ରୂପେ ନିର୍ଦ୍ଦେଶନା ଦେଇ ପାରିଲେ ନାହିଁ । ସେତେବେଳେ 'ଅନୁସୂୟା' ଚଳଚ୍ଚିତ୍ରର ନିର୍ଦ୍ଦେଶକ ମାନ୍ଦ୍ରାଜର ଶ୍ରୀ ସଞ୍ଜିବୀଙ୍କୁ ନିର୍ଦ୍ଦେଶକ ହିସାବରେ ମୁଁ ନିଯୁକ୍ତ ଦେଲି । ମୁଁ ତ ସ୍ୱୟଂ ମୋ ସ୍ତ୍ରୀଙ୍କ ରୋଗଶଯ୍ୟା ଓ ତାଙ୍କର ଶେଷ କୃତ୍ୟରେ ବ୍ୟସ୍ତ । ଏ ପାଖରେ ମାନ୍ଦ୍ରାଜ ସୁଟିଂରେ ଏତେ ରକମ ବାଧାବିଘ୍ନ ଆସିଲା ଓ ବିଶୃଙ୍ଖଳା ଘଟିଲା ଯେ ସାତ ଲକ୍ଷ ଟଙ୍କାର ଅଟକଳ ତେର ଲକ୍ଷ ଟଙ୍କାକୁ ଉଠିଗଲା । ମୋର ପରମବନ୍ଧୁ ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି ଏବଂ ତାଙ୍କ ସ୍ତ୍ରୀ ଶ୍ରୀମତୀ ବୀଣା ମହାନ୍ତି ଏବଂ ବନ୍ଧୁ ଶ୍ରୀ ରଣଧୀର ଦାସ ଏହି ଚଳଚ୍ଚିତ୍ର ନିର୍ମାଣ ଦିଗରେ ଯଥେଷ୍ଟ ସାହାଯ୍ୟ କଲେ ଓ ମୋ ପାଖରେ ଠିଆହେଲେ, କିନ୍ତୁ ମାନ୍ଦ୍ରାଜ ଦାଉରୁ ଆମେ ବର୍ତ୍ତିପାରିଲୁ ନାହିଁ । ମୁଁ ଏବଂ ମୋର ବନ୍ଧୁ ପୁରୋହିତ ମାନ୍ଦ୍ରାଜ ଯାଇ କାର୍ଯ୍ୟ ଶେଷ କରି ୧୯୭୧ ସେପ୍‌ଟେମ୍ବର ୧ମ ତାରିଖରେ ଛବିଧରି ଓଡ଼ିଶାକୁ ଆସିଲୁ । ୧୯୬୮ ମଇ ମାସରେ ଆରମ୍ଭ ହୋଇଥିବା ଏହିଛବି ୧୯୭୧ ମସିହା ସେପ୍‌ଟେମ୍ବର ଦ୍ୱିତୀୟ ସପ୍ତାହରେ ମୁକ୍ତିଲାଭ କଲା । ଛବିର କେତେକ ଦୃଶ୍ୟ ଏବଂ କେତେକ ଘଟଣାବଳୀ ବାଦ୍ ଦିଆଯାଇଥିବାରୁ ମୋ ମନ ମାନିଲା ନାହିଁ ଏବଂ ମୁଁ ପୁନଃ ଦ୍ୱିତୀୟଥର କଲିକତା ଯାଇ ଅଧିକା ଏକଲକ୍ଷ ଟଙ୍କା ଖର୍ଚ୍ଚ କରି ଶ୍ରୀ ସୁଶୀଲ ମୁଖାର୍ଜୀଙ୍କ ନିର୍ଦ୍ଦେଶନାରେ ସର୍ବାଙ୍ଗ ସୁନ୍ଦର କଲି । ଫଳରେ ୧୯୭୧ ମସିହାର ଶ୍ରେଷ୍ଠ ଛବି ହିସାବରେ ମୁଁ ଏବେ **State Award** ପାଇଲି । 'ମଥୁରା ବିଜୟ'ର ସଙ୍ଗୀତ ନିର୍ଦ୍ଦେଶକ ସଙ୍ଗୀତ ସୁଧାକର ଶ୍ରୀ ବାଲକୃଷ୍ଣ ଦାସ, ଶ୍ରେଷ୍ଠ ପ୍ରଚ୍ଛଦପଟ୍ଟ ଗାୟକ ହିସାବରେ ଶ୍ରୀ ଭିକାରୀ ଚରଣ ବଲ ଓ ଶ୍ରେଷ୍ଠ ଶିଶୁକଳାକାର ହିସାବରେ ପବନ କୁମାର ମଧ୍ୟ ପୁରସ୍କୃତ ହେଲେ । ନିକଟ ଭବିଷ୍ୟତରେ 'ମଥୁରା ବିଜୟ' ହିନ୍ଦି ଓ ବଙ୍ଗଳା ଭାଷାରେ ଡବିଂ ହେବାକୁ ଯାଉଛି । ଓଡ଼ିଆ ଭାଷାର 'ମଥୁରା ବିଜୟ' ପ୍ରଥମ

ଛବି ଯାହାକି ସ୍ୱାଧ ଭାଷାରେ ଡ଼ବିଂ ହେବାର ସୁଯୋଗପାଇଲା । ଏହା ଓଡ଼ିଶା ପକ୍ଷରେ କମ୍ ଗୌରବର କଥା ନୁହେଁ ।

ଓଡ଼ିଶାରେ ପ୍ରଥମ କରି ଦିଆଯାଉଥିବା ସବସିଡ଼ି ପୁରସ୍କାର 'ମଥୁରା ବିଜୟ' ପାଇଁ ସବୁଠାରୁ ବେଶି ଦେଢ଼ଲକ୍ଷ ଟଙ୍କା ମଧ୍ୟ ପାଇଲି । ଏହା ସତ୍ତ୍ୱେ ଚଉଦଲକ୍ଷ ଟଙ୍କା ସହଜରେ ଫେରି ପାଇଲି ନାହିଁ । ସୁଧକୁ ସୁଧ ବଢ଼ି ବଢ଼ି ଚାଲିଛି । ସୁତରାଂ ଜଞ୍ଜାଳରୁ ମୁକ୍ତ ହେବାକୁ ଚାହୁଁଥିଲି ଏବଂ ସେଥିପାଇଁ ଭୁବନେଶ୍ୱରରେ ଥିବା ମୋର ଗୋଟିଏ ସୁରମ୍ୟ ଓ ସୁସଜ୍ଜିତ ଗୃହକୁ ବିକି କେତେକ ପରିମାଣରେ ଟଙ୍କା ପରିଶୋଧ କଲି ।

ଭୁବନେଶ୍ୱରର ମୋର ଏହି କୋଠା କିଣାଯାଇଥିଲା ମୋର ରୁଗ୍ଣ ସ୍ତ୍ରୀଙ୍କ ମଝିରେ ମଝିରେ ଭୁବନେଶ୍ୱରକୁ ନେଇ ତାଙ୍କର ମନ ଓ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ । ବିଶେଷତଃ ଫେବ୍ରୁୟାରୀ ମାର୍ଚ୍ଚ ବେଳକୁ କେନ୍ଦ୍ରର ଗ୍ରାଣ୍ଟ ଏବଂ ଅନ୍ୟାନ୍ୟ ସରକାରୀ ସାହାଯ୍ୟ ପାଇବା ଆଶାରେ ମୁଁ ସେଠାରେ ରହେ ।

ଏହି ରମଣୀୟ ବାସଗୃହର ସଂରକ୍ଷଣ ଲାଗି ମୁଁ ବମ୍ବେର ମୋର ଗୁରୁଭାଇ ଶ୍ରୀ ଧନଞ୍ଜୟ ପୁରୋହିତଙ୍କୁ ଆଣି ଭୁବନେଶ୍ୱରରେ ରଖିଲି । ପୁରୋହିତ ଜଣେ ସାଧକ ଓ ଆମେ ଦୁହେଁ ପୁରଲିଆ ହରିଓଁ ଆଶ୍ରମର ଶ୍ରୀ ମୋଟାଙ୍କର ଶିଷ୍ୟ । ସେ ତାଙ୍କର ସକଳ ବ୍ୟବସାୟ ଛାଡ଼ି ତାଙ୍କ ସ୍ତ୍ରୀଙ୍କ ସହିତ ସାଧନା ପାଇଁ ଭୁବନେଶ୍ୱରରେ ରହିଲେ । କିନ୍ତୁ ମୋ ସ୍ତ୍ରୀ ଚାଲିଯିବା ପରେ ମୋର ଆଉ ଭୁବନେଶ୍ୱର ଯିବାର ମନ ବଳିଲା ନାହିଁ । ସେମାନେ ମଧ୍ୟ ଉଦାସୀନ ହୋଇ ସବୁଦିନ ପାଇଁ ଓଡ଼ିଶା ଛାଡ଼ି ଚାଲିଗଲେ ଏବଂ ଏ କୋଠା ମଧ୍ୟ ମୁଁ ସବୁଦିନ ପାଇଁ ଛାଡ଼ିଦେଲି ।

ଓଡ଼ିଶା ଫିଲ୍ମ ଡେଭଲେପମେଣ୍ଟ କର୍ପୋରେସନର ନିୟମ ଅନୁଯାୟୀ ଗୋଟିଏ ପରେ ଗୋଟିଏ ଛବି ନିର୍ମାଣ ନ କଲେ ସେମାନେ ସବସିଡ଼ି ଦେବେ ନାହିଁ । ସେଥିପାଇଁ 'ମଥୁରା ବିଜୟ' ପାଇଁ ସବସିଡ଼ି ପାଇବା ହେତୁ ମୋତେ ଆଉ ଗୋଟିଏ ଷଷ୍ଠ ଛବି ପ୍ରସ୍ତୁତ କରିବାକୁ ପଡ଼ିଲା ।

ବମ୍ବେର ଶ୍ରୀ ପାଣ୍ଡୁରଙ୍ଗ ଶାସ୍ତ୍ରୀଙ୍କର ହିତକଥା "ମାତୃ ଦେବୋ ଭବ" ଅବଲମ୍ବନରେ "ଅଗ୍ନିଚୁମ୍ବନ" ନାମକ ଗୋଟିଏ ଛବି ପ୍ରସ୍ତୁତ କଲି । ଏହାର ଗଳ୍ପ ଓ ଚିତ୍ରନାଟ୍ୟ ଲେଖିଲେ ଉଦୀୟମାନ ନାଟ୍ୟକାର ଶ୍ରୀ କାର୍ତ୍ତିକଚନ୍ଦ୍ର ରଥ ଏବଂ ନିର୍ଦ୍ଦେଶନା ଦେଲେ କଲିକତାର ଶ୍ରୀ ସୁଶୀଲ ମୁଖାର୍ଜୀ । ଏହି ଛବି ସବୁ ଦିଗରେ ସୁନ୍ଦର କରିବାର ଚେଷ୍ଟା କରାଗଲେ ମଧ୍ୟ ଆଶାନୁରୂପ ଲୋକପ୍ରିୟ ହୋଇ ପାରିଲା ନାହିଁ । ତାହାର କାରଣ ଅନୁସନ୍ଧାନ କରି ଜଣାଗଲା ଯେ ଏବେ ଆଉ ରଙ୍ଗୀନ ଛଡ଼ା

କଳା ଧଳା (Black & white) ଛବି ଲୋକେ ଦେଖିବାକୁ ପସନ୍ଦ କରୁନାହାନ୍ତି । ପୁଣି ଦର୍ଶକମାନେ ଶୀତତାପ ନିୟନ୍ତ୍ରିତ (air-conditioned) ଥିଏଟରରେ ହିଁ ସିନେମା ଦେଖିବାକୁ ଚାହାନ୍ତି । ବମ୍ବେର ହିନ୍ଦୀ ଧରଣର ଛବି ଦେଖି ଦେଖି ଆମ ଓଡ଼ିଆ ଦର୍ଶକଙ୍କ ଚକ୍ଷୁରେ ଏତେ ପରିବର୍ତ୍ତନ ଆସିଛି ଯେ ସେମାନେ ଓଡ଼ିଆ ଛବି ମଧ୍ୟ ହିନ୍ଦୀ ଛବି ପରି ଦେଖିବାକୁ ଚାହାନ୍ତି । ହିନ୍ଦୀ ଛବିର ନିର୍ମାଣ ଖର୍ଚ୍ଚ ଓ ସାରା ଭାରତ ବର୍ଷରେ ତାର ଚାହିଦାର ପ୍ରତିଯୋଗିତାରେ ଅଳ୍ପ ଧନରେ ପ୍ରସ୍ତୁତ ହେଉଥିବା ଏବଂ କେବଳ ଆମ ପ୍ରଦେଶର ଥିଏଟରମାନଙ୍କରେ ଚାହିଦା ଦୃଷ୍ଟିରୁ ତିଷ୍ଠି ପାରିବ କିପରି ? ଭବିଷ୍ୟତରେ ବହୁ ଦର୍ଶକ ନିଜ ଭାଷାର ଛବି ପାଇଁ ଆଗ୍ରହ ପ୍ରକାଶ କରିବେ ଓ ଥିଏଟରର ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଲେ ସେହି ସମୟରେ ହୁଏତ ପ୍ରଯୋଜକ ମାନଙ୍କର ଅସୁବିଧା ହେବ ନାହିଁ । କିନ୍ତୁ ବର୍ତ୍ତମାନ ପରିସ୍ଥିତିରେ ଯେ କୌଣସି ପ୍ରଯୋଜକ ହିନ୍ଦୀ ପରି ଛବି ପ୍ରସ୍ତୁତ କରିବାକୁ ଗଲେ କ୍ଷତିଗ୍ରସ୍ତ ହେବେ ନିଶ୍ଚୟ ଏବଂ ସେଥିପାଇଁ ଯାହା ଦେଖାଯାଉଛି, ଅଧିକାଂଶ ପ୍ରଯୋଜକ ଥରେ ମାତ୍ର ଚିତ୍ର ପ୍ରଯୋଜନା କରି ଓହରି ଯାଉଛନ୍ତି । ଓଡ଼ିଆ ଫିଲ୍ମ ପ୍ରସ୍ତୁତ କରିବା ଏବଂ ଚଲାଇବା ପାଇଁ ବହୁ ବାଧା ବିଘ୍ନ ରହିଛି ଯାହା ସ୍ଥାନ ଅଭାବରୁ ଏଠାରେ ଉଲ୍ଲେଖ କରିବା ସମ୍ଭବପର ନୁହେଁ । କେବଳ ସଂକ୍ଷିପ୍ତରେ ଏତିକିରେ ଶେଷ କରୁଛି ।

ଗୁରୁଙ୍କ ଆଦେଶରେ ଆଉ ଗୋଟିଏ ରଙ୍ଗୀନ ଛବି ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ କରିବାର ପରିକଳ୍ପନା ରହିଛି । ଏହା ହେବ ମୋର ସପ୍ତମ ଅବଦାନ ।

ଓଡ଼ିଶାରେ କୌଣସି ପ୍ରଯୋଜକ ଏକା ସାଙ୍ଗରେ ଏତେ ଛବି ଅଦ୍ୟ ପର୍ଯ୍ୟନ୍ତ ପ୍ରସ୍ତୁତ କରି ନାହାନ୍ତି । ପୁନଶ୍ଚ ମୋର ଛଅଟାଯାକ ଛବି ଆଜଯାଏ କେଉଁଠି ନା କେଉଁଠି ଚାଲୁଛି । ଭଗବାନଙ୍କ ଦୟାରୁ ଚଳଚ୍ଚିତ୍ର ଜଗତରେ ସୁନାମ ଅର୍ଜନ କରିଛି ଏବଂ ସେଥିପାଇଁ ଫିଲ୍ମ ଡେଭଲେପ୍‌ମେଣ୍ଟ କର୍ପୋରେସନ ଗଢ଼ା ହେବାଦିନୁ ଆଜଯାଏ ମୁଁ ଏକମାତ୍ର ପ୍ରଯୋଜକ ଯେକି ଜଣେ ଡାଇରେକ୍ଟର ଭାବେ ରହି ଆସିଛି ।

## ଗୃହ ନିର୍ମାଣ—

ରଙ୍ଗମଞ୍ଚ ତିଆରି କରିବାରେ ଆମେ ବହୁତ ଧାକୁଆ ହୋଇଗଲେ ମଧ୍ୟ ସାହସର ସହିତ ଆଉ ଗୋଟିଏ ଯୋଜନା ହାତକୁ ନେଲୁ । ଭାରତ ସରକାରଙ୍କର ଯୋଜନାନୁସାରେ ସାରା ଭାରତ ବର୍ଷରେ ପ୍ରାୟ ସବୁ ବଡ଼ ବଡ଼ ସହରମାନଙ୍କରେ କର୍ମଜୀବୀ ମହିଳା ନିବାସ (Working Women's Hostel) ନିର୍ମାଣ କରିବା ପାଇଁ ଆହ୍ୱାନ ଆସିଲା । ସମାଜ ମଙ୍ଗଳ ବୋର୍ଡ଼ (Social Welfare Board) ଜରିଆରେ ଭୁବନେଶ୍ୱର, ରାଉରକେଲା ପରି ସହରମାନଙ୍କରେ ଏପରି

ହଷ୍ଟେଲ ତିଆରି ହେଲା । କଟକରେ ଏହି ଯୋଜନାକୁ କାର୍ଯ୍ୟକାରୀ କରିବାର ମନସ୍ଥ କରି ଆମେ ଦରଖାସ୍ତ କଲୁ । ବୋର୍ଡ଼ର କର୍ମକର୍ତ୍ତା ଏବଂ ଆମ ରାଜ୍ୟର ସେତେବେଳର ମୁଖ୍ୟମନ୍ତ୍ରୀ ଏଥିରେ ରାଜି ହେଲେ ନାହିଁ ଏବଂ ମହିଳା ସମିତି ଜରିଆରେ ହିଁ ଏହାକୁ କରିବା ପାଇଁ ସ୍ଥିର କଲେ । କିନ୍ତୁ ପରେ ଆମର ଅନୁରୋଧ କ୍ରମେ ସେମାନେ ସେଥିରେ ରାଜି ହେଲେ ଏବଂ ଦରଖାସ୍ତ ମଞ୍ଜୁର ହେଲା । ଏହି ଯୋଜନାରେ ଦଶଲକ୍ଷ, ପନ୍ଦରଲକ୍ଷ ଟଙ୍କା ଦିଆଯାଉଛି ଏବଂ ଏହା ଏକ ବୃହତ୍ତମ ଯୋଜନା ବୋଲି ଆମେ ଜାଣିନଥିଲୁ । ଆମେ କେବଳ ଏକଲକ୍ଷ ପଚାଶହଜାର ଟଙ୍କାର ଅଟକଳ ଦେଲୁ ଏବଂ ସରକାର ଶତକଡ଼ା ପଞ୍ଚସ୍ତରୀ ଭାଗ ଗ୍ରାଣ୍ଟ ମଞ୍ଜୁର କଲେ ।

ବହୁବର୍ଷ ହେଲା ଗୋଟିଏ ଆଠଗୁଣ୍ଠ ଜାଗା କେବଳ ଏକଟଙ୍କା ସଲାମିରେ ଆମେ କେନ୍ଦ୍ର ପାଇଁ ପାଇଥିଲୁ । ଏଥିପାଇଁ ସେତେବେଳେ ରାଜସ୍ୱ ବିଭାଗର ସଚିବ ଶ୍ରୀ ହିମାଂଶୁ କୁମାର ଘୋଷ ଯେ କି ଆମ କେନ୍ଦ୍ରର ପୁରାତନ ଟ୍ରଷ୍ଟୀ ସ୍ୱର୍ଗତଃ ତୃପ୍ତି ଘୋଷଙ୍କର ସ୍ୱାମୀ ତାଙ୍କର ପ୍ରଚେଷ୍ଟାରେ ଆମ୍ଭମାନଙ୍କୁ ଏ ଜାଗା ସୁବିଧାରେ ମିଳିଲା । ପରେ ପରେ ଶ୍ରୀମତୀ ତୃପ୍ତି ଘୋଷଙ୍କର ଅବସାନ ଘଟିଲା ଓ ତାଙ୍କ ସ୍ମୃତିରକ୍ଷା ପାଇଁ ଏହି ହଷ୍ଟେଲ ତିଆରି ହେଲେ ତାଙ୍କ ନାମରେ ନାମିତ କରିବାର ଘୋଷଣା କଲୁ । ଶ୍ରୀମାନ୍ ହିମାଂଶୁ ବାବୁ ମଧ୍ୟ ଏଥିପାଇଁ ପ୍ରଥମକରି ଟ ୫,୦୦୦ ଦାନ କଲେ ।

ଏହି ଜାଗା ବହୁତ ଦିନ ଧରି ଖାଲି ପଡ଼ି ରହିଥିବାରୁ ଆଖପାଖ ଅଞ୍ଚଳର ଲୋକଙ୍କର ଦୃଷ୍ଟି ଏହା ଉପରେ ଥିଲା । ସୁତରାଂ ଆମେ କାର୍ଯ୍ୟ ଆରମ୍ଭ କରିବାର ଅବ୍ୟବହିତ ପୂର୍ବରୁ ଦୁର୍ବୃତ୍ତମାନେ ଏ ଜାଗା ମାଡ଼ିବସିଲେ । କେତେକ ବିରୋଧୀ ଲୋକେ ମଧ୍ୟ ସେମାନଙ୍କୁ ଉତ୍ସାହିତ କଲେ । ମ୍ୟୁନିସିପାଲିଟି ଓ ସରକାରୀ କର୍ତ୍ତୃପକ୍ଷଙ୍କୁ ଲେଖାଲେଖି କରି ଆମ୍ଭମାନଙ୍କୁ ବାଧା ଦେଲେ । କିନ୍ତୁ ଆମେ ଏ କାର୍ଯ୍ୟ କରିବା ପାଇଁ ଦୃଢ଼ପ୍ରତିଜ୍ଞ ଥିଲୁ । ସୁତରାଂ ଦୁର୍ଗାପୂଜା ସମୟରେ ଯେତେବେଳେ କୋର୍ଟ କଚେରୀ ଏବଂ ସ୍କୁଲ କଲେଜ ବନ୍ଦଥିଲା, ସେହି ସମୟରେ ସୁବିଧା ଦେଖି ରାତାରାତି ଆମ୍ଭେମାନେ ପାଚେରୀ ଘେରାଇବା ଆରମ୍ଭ କଲୁ । ୧୪୪ ଧାରା ଜାରି କରିବାରେ ଏବଂ ଛୁଟି ଅବସରରେ ବହୁଲୋକ ଆମୋଦ ପ୍ରମୋଦରେ ମଜ୍ଜି ରହିଥିବା ବେଳେ ମିଳିତ ଭାବରେ କୌଣସି ପଦକ୍ଷେପ ସେମାନେ ନେଇ ପାରିଲେ ନାହିଁ ଏବଂ ଆମେ ନିର୍ବିଘ୍ନରେ ପାଚେରୀ କାମ ଏକ ସପ୍ତାହ ଭିତରେ ଶେଷ କଲୁ । ପରେ ମ୍ୟୁନିସିପାଲିଟି କର୍ତ୍ତୃପକ୍ଷ ଏବଂ କେତେକ ସରକାରୀ କର୍ମଚାରୀ ଆମକୁ ଧମକାଧମକି କରି ବିଫଳ ହେଲେ ଏବଂ ୧୯୭୭ ମସିହା ଜୁଲାଇ ମାସ ୧୦ ତାରିଖ ଏକ ଶୁଭ ଦିବସରେ ଡକ୍ଟର ହରେକୃଷ୍ଣ ମହତାବଙ୍କ କରକମଳରେ କର୍ମଜୀବୀ ମହିଳା ନିବାସର ଶିଳାନ୍ୟାସ ଦିଆଗଲା ।

ହଷ୍ଟେଲର ପ୍ରତ୍ୟେକ ପ୍ରକୋଷ୍ଠ ପାଇଁ ପାଞ୍ଚହଜାର ଟଙ୍କା କରି ଦାନ ଦେଲେ ଦାତାମାନଙ୍କର ନାମରେ ପ୍ରକୋଷ୍ଠରେ ରହିବ ଏପରି ଏକ ଯୋଜନାରେ ବନ୍ଧୁଲୋକେ ଆକୃଷ୍ଟ ହେଲେ ଏବଂ ପ୍ରଥମେ ଶ୍ରୀମତୀ ଉମେଶ୍ୱରୀ ସୁଥୁ ଏବଂ ମୋ ସ୍ୱାମୀଙ୍କ ନାମରେ ମୁଁ ଟଙ୍କା ଦାନ କଲୁ । ପରେ ପରେ ପ୍ରତ୍ୟେକ ପ୍ରକୋଷ୍ଠ ପାଇଁ ଏପରି ଦାନ ମିଳିଲା ଏବଂ ସେଥିରେ ଦୁଇଟି ପ୍ରକୋଷ୍ଠ ପାଇଁ ଡକ୍ଟର ବଂଶୀଧର ପଣ୍ଡାଙ୍କ ଦାନ ଓ ଗୋଟିଏ ପ୍ରକୋଷ୍ଠ ପାଇଁ ରୋଟାରୀ କ୍ଲବର ଇନର ହ୍ୱିଲର ଦାନ ଅନ୍ୟତମ । ଅନ୍ୟ ବହୁ ବନ୍ଧୁମାନେ ମଧ୍ୟ ଏପରି ଦାନ କରିଛନ୍ତି । କିନ୍ତୁ ଜଣଙ୍କ ନାମ ମୁଁ ବିଶେଷ ଭାବରେ ଉଲ୍ଲେଖ କରୁଛି । ସେ ହେଉଛନ୍ତି ଆମ କେନ୍ଦ୍ରର ପୁରାତନ ସାଥୀ ଯୋଡ଼ାର ଶ୍ରୀ ବଂଶୀଧର ତ୍ରିପାଠୀ । ବଂଶୀବାବୁ ଏହିପରି ଦାନ କେନ୍ଦ୍ରକୁ ବାରମ୍ବାର ଦେଇଛନ୍ତି ଏବଂ କେବେହେଲେ ନାମ କମ୍ବା କୀର୍ତ୍ତିର ଆଶା ରଖି ନାହାନ୍ତି । ଏହି ଯୋଜନାରେ ମଧ୍ୟ ସେ "ରକାଡ଼ୋଲା" ନାମରେ ଦାନ କରିଛନ୍ତି । ଏପରି ପୃଷ୍ଠପୋଷକ ପାଇବା ବିରଳ ।

ଦିନକୁ ଦିନ ମଜୁରୀହାର ଓ ଜିନିଷପତ୍ରର ଦରଦାମ ବୃଦ୍ଧି ପାଇବାରୁ ହଷ୍ଟେଲର ଅଟକଳ ଦ୍ୱିଗୁଣିତ ହୋଇଗଲା ଏବଂ ଏପରି ପ୍ରାୟ ଅଢ଼େଇ ଲକ୍ଷ ଟଙ୍କାର ନିର୍ମାଣ କାର୍ଯ୍ୟ ସରକାରୀ ଓ ଜନସାଧାରଣଙ୍କ ସାହାଯ୍ୟରେ ପ୍ରାୟ ଦୁଇ ବର୍ଷରେ ଶେଷ କଲୁ ଏବଂ ଗୋଟିଏ ସୁସଜ୍ଜିତ ହଷ୍ଟେଲ ସର୍ବୋଦୟ ନାୟିକେଶୀ ଶ୍ରୀମତୀ ରମା ଦେବୀ ଏହାକୁ ୧୯୭୧ ମସିହା ଡିସେମ୍ବର ୨୩ ତାରିଖରେ ଉଦ୍‌ଘାଟନ କଲେ ।

ଏହି ହଷ୍ଟେଲ ନିର୍ମାଣ କରିବାର ଆମର ପ୍ରଧାନ ଉଦ୍ଦେଶ୍ୟ ଥିଲା ଯେ **Women's College**ର କେତେକ ଶିକ୍ଷୟିତ୍ରୀ ଏବଂ ଏହିପରି କେତେକ ଶ୍ରମଜୀବୀ ଭଦ୍ରମହିଳା ଏଠାରେ ଆସି ରହନ୍ତୁ ଏବଂ ସେମାନେ ଅବସର ସମୟରେ କେନ୍ଦ୍ର କାର୍ଯ୍ୟରେ ସାହାଯ୍ୟ କରନ୍ତୁ । ନାନା କାରଣରୁ ସଠିକ୍ ଭାବରେ ଏ ଯୋଜନା କାର୍ଯ୍ୟକାରୀ କରାଯାଇ ପାରିଲା ନାହିଁ । କିନ୍ତୁ ଭବିଷ୍ୟତରେ ଆମେ ବହୁ ବହୁ ଶ୍ରମଜୀବୀ ମହିଳାମାନଙ୍କୁ ଏହି ହଷ୍ଟେଲରେ ଆଶ୍ରୟ ଦେବୁ ଯେଉଁମାନେ ଅନୁଷ୍ଠାନର ଗୋଟିଏ ଗୋଟିଏ ଅଙ୍ଗ **(asset)** ହୋଇ ରହିବେ ।

କଟକ ସହରରେ ପନ୍ଦର ଲକ୍ଷ ଟଙ୍କା ଖର୍ଚ୍ଚରେ ଗୋଟିଏ ପ୍ରଶସ୍ତ ଛଅ ମହଲା ଶ୍ରମଜୀବୀ ମହିଳାନିବାସର କାର୍ଯ୍ୟ ଆଗେଇଚାଲିଛି । ସେଠାରେ ମଧ୍ୟ ଏପରି ବହୁମହିଳା ଆଶ୍ରୟ ପାଇବେ, କିନ୍ତୁ ଏହାର ପାରିପାର୍ଶ୍ୱିକ ପରିବେଶ ଦୃଷ୍ଟିରୁ ଆମ ହଷ୍ଟେଲର ମହତ୍ତ୍ୱ ବଢ଼ିବ ସେଥିରେ ସନ୍ଦେହ ନାହିଁ । ସରକାରୀ ସାହାଯ୍ୟରେ ଏହାର ପରିସର ଆହୁରି ବଢ଼ାଇବାର ଆମର ଯୋଜନା ରହିଛି ।

## ଶିଶୁ ମଞ୍ଜରୀ—

୧୯୭୯ ମସିହା ଆନ୍ତର୍ଜାତିକ ଶିଶୁ ସମ୍ବତ୍ସର ଉପଲକ୍ଷେ କେନ୍ଦ୍ରର ଶିଶୁ ବିଭାଗ ଜରିଆରେ କେତେକ ଉଲ୍ଲେଖନୀୟ କାର୍ଯ୍ୟ ହୋଇଥିଲା । ରାଜ୍ୟସ୍ତରୀୟ ଚିତ୍ରାଙ୍କନ, ପ୍ରବନ୍ଧ ଓ ଏକାଙ୍କିକା ପ୍ରତିଯୋଗିତା ଏହାର ଅନ୍ତର୍ଭୁକ୍ତ । କଟକ ସହରର ସ୍କୁଲ୍ ପିଲାମାନଙ୍କ ମଧ୍ୟରେ ଆବୃତ୍ତି ପ୍ରତିଯୋଗିତାରେ ମଧ୍ୟ ଆୟୋଜନ କରାଯାଇଥିଲା ।

ଏହା ଭିତରେ ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ପାଠାଗାରର ପରିସର ଅନେକ ପରିମାଣରେ ବୃଦ୍ଧି ପାଇଛି । ଶିଶୁମାନଙ୍କ ବ୍ୟତୀତ ଯୁବକମାନଙ୍କ ପାଇଁ ମଧ୍ୟ ବହୁ ରକମ ବହି ପାଠାଗାରରେ ସ୍ଥାନ ପାଇଛି । ସରକାରୀ ସାହାଯ୍ୟ ଛଡ଼ା ରାଜା ରାମମୋହନ ରାୟ ଟ୍ରଷ୍ଟରୁ ମଧ୍ୟ ଆମ ପାଠାଗାର ପାଇଁ ଦାନ ମିଳିଛି । ନୃତ୍ୟ ଗୀତ, ସଙ୍ଗୀତ ଓ ଚଳଚ୍ଚିତ୍ର ସମ୍ବଳିତ ବହୁ ଉପାଦେୟ ଓ ମୂଲ୍ୟବାନ ପୁସ୍ତକ ଓ ସାମୟିକ ପାଠାଗାରରେ ଗଚ୍ଛିତ ହେଲାଣି । ଏ ସବୁ ଗୋଟିଏ ସ୍ୱତନ୍ତ୍ର ପ୍ରକୋଷ୍ଠରେ ରଖିବାର ଯୋଜନା କରୁଛୁ । ଯେହେତୁ ଏହା ଗବେଷକମାନଙ୍କ ସାହାଯ୍ୟରେ ଲାଗିବ ।

## ବିଭିନ୍ନ ଦିଗରେ କେନ୍ଦ୍ରର ଅଗ୍ରଗତି—

ବିଗତ ବର୍ଷମାନଙ୍କରେ କେନ୍ଦ୍ର ତରଫରୁ ତିନୋଟି ଅତି ଉପାଦେୟ ମୁଖପତ୍ର ପ୍ରକାଶପାଇଛି । ଏପରି ପ୍ରାୟ କୋଡ଼ିଏଟି ସଂଖ୍ୟା ଆଜି ପର୍ଯ୍ୟନ୍ତ ପ୍ରକାଶ କରାଯାଇଛି । ଏସବୁ ଗ୍ରନ୍ଥ ମାନଙ୍କରେ ବହୁ ଗବେଷଣାମୂଳକ ଲେଖା ସ୍ଥାନ ପାଇଛି । ନୃତ୍ୟ, ଗୀତ, ନାଟକ, ଚାରୁକଳା ଓ ଚଳଚ୍ଚିତ୍ର ଉପରେ ଆଧାରିତ ଏହି ଲେଖାମାନଙ୍କରେ ଆଜି ନୁହେଁ ପଚାଶ ବର୍ଷ ପରେ ମଧ୍ୟ ଆଦର ରହିବ । ସୁତରାଂ ଆମର ତିରିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଭିନ୍ନ ଭିନ୍ନ ବିଭାଗର ଲେଖାମାନଙ୍କର ଭିନ୍ନ ପୁସ୍ତକ ଆକାରରେ ପ୍ରକାଶ କରିବାର ଯୋଜନା ବାଢ଼ିଛୁ । ଏହାଦ୍ୱାରା ଗ୍ରନ୍ଥାଗାରୀ ଓ ଗବେଷକମାନଙ୍କର ଅନେକ କିଛି ଉପକାର ହେବ ।

## ଉର୍ଦ୍ଦୁ କବି ସମ୍ମିଳନୀ—

ହିନ୍ଦୀପରି ଉର୍ଦ୍ଦୁ ମଧ୍ୟ ଗୋଟିଏ ସର୍ବଭାରତୀୟ ଭାଷା ଏବଂ ଆଜିଯାଏ କୋର୍ଟ କଚେରୀ ଏବଂ ଅନ୍ୟାନ୍ୟ ସ୍ତରରେ ଏହି ଭାଷାର ପ୍ରୟୋଗ ରହିଛି । କେନ୍ଦ୍ର ତରଫରୁ ୧୯୭୮ ମସିହାରେ ଗୋଟିଏ ଅଖିଳ ଭାରତୀୟ ଉର୍ଦ୍ଦୁ କବି ସମ୍ମିଳନୀର ଆୟୋଜନ କରାଯାଇଥିଲା ଏବଂ ଏହି ସମ୍ମିଳନୀରେ ଭାରତବର୍ଷର ବହୁ ପ୍ରତିଷ୍ଠିତ

ଉର୍ଦ୍ଦୁ କବିମାନେ ଯୋଗ ଦେଇଥିଲେ । ତତ୍କାଳୀନ ରାଜ୍ୟପାଳ ଶ୍ରୀ ଭଗବତ୍ ଦୟାଲ୍ ଶର୍ମା, ଡକ୍ଟର ରାଧାନାଥ ରଥ, ଶିଳ୍ପପତି ଡକ୍ଟର ବଂଶୀଧର ପଣ୍ଡାଙ୍କ ପରି ବହୁ ସ୍ଥାନୀୟ ବିଦୁଷୀ ଜନ ଓ ଓଡ଼ିଶାର ହିନ୍ଦୁ କବି ମଧ୍ୟ ଏଥିରେ ଯୋଗ ଦେଇଥିଲେ । ଭାରତବର୍ଷରେ ଉର୍ଦ୍ଦୁ ଭାଷା ଏବଂ ଆମ ରାଜ୍ୟରେ ତାହାର ଚଳ ପ୍ରଚଳନ ଉପରେ ଗୋଟିଏ ବିସ୍ତୃତ ପ୍ରବନ୍ଧ ମୁଁ ଲେଖିଥିଲି ଏବଂ ତାହା ଧାରାବାହିକ ଭାବେ "ସମାଜ"ରେ ପ୍ରକାଶ ପାଇଥିଲା । ଏହାକୁ ସଫଳ କରିବାରେ ଶ୍ରୀ ରଶ୍ମି କାନ୍ତ ପାରେଖ ଯେକି ନିଜେ ଜଣେ ଉର୍ଦ୍ଦୁ କବି ଏବଂ "ରାହି" ନାମରେ ପରିଚିତ ସେ ଏଥିରେ ବହୁତ ସାହାଯ୍ୟ କରିଥିଲେ ।

## ସାଂସ୍କୃତିକ ବିନିମୟ ଯୋଜନା –

ବିଗତ ବର୍ଷମାନଙ୍କରେ ଆମ୍ଭେମାନେ ଆନ୍ତଃ ପ୍ରାଦେଶିକ ସାଂସ୍କୃତିକ ବିନିମୟ ଯୋଜନାରେ ମଣିପୁର ରାଜ୍ୟ, ଉତ୍ତର ପ୍ରଦେଶର ଡେରାଡ଼ୁନ୍ ଓ ମସୋରୀ, ପଶ୍ଚିମବଙ୍ଗ, ଦିଲ୍ଲୀ ପ୍ରଭୃତି ସ୍ଥାନମାନଙ୍କରେ ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ ପାଇଁ ଯାଇଥିଲୁ ।

ଅଖିଳ ଭାରତ ଗୁଜରାଟୀ ସମାଜର ସମ୍ପାଦକ ଓ କଲିକତା ପୂର୍ବ ଗୁର୍ଜରୀ ପତ୍ରିକାର ମୁଖ୍ୟ ଶ୍ରୀ ଶିବରାଜ ଭାରଦ୍ୱାଜଙ୍କ ତତ୍ତ୍ୱାବଧାନରେ ଗୋଟିଏ ସାଂସ୍କୃତିକ ଦଳ ପୂର୍ବଭାରତର ଏକଶହ ପିଲାଙ୍କୁ ନେଇ ଗୁଜରାଟ ଦର୍ଶନକୁ ଯାଇଥିଲେ । ବିହାର, ବଙ୍ଗଳା, ଆସାମ ଓ ଓଡ଼ିଶାରୁ ଯାଇଥିବା ଏହି ସାଂସ୍କୃତିକ ଦଳରେ କଳା ବିକାଶ କେନ୍ଦ୍ର ଆମ ରାଜ୍ୟର ପ୍ରତିନିଧିତ୍ୱ କରିଥିଲା । ଆମ କଳାକାରମାନେ ଗୁଜରାଟର ପ୍ରତ୍ୟେକ ଦର୍ଶନୀୟ ଓ ଶିକ୍ଷଣୀୟ ସ୍ଥାନମାନ ବୁଲିକି ସ୍ପେଶାଲ୍ ବସ୍‌ରେ ଏକମାସ ପର୍ଯ୍ୟନ୍ତ ପରିଦର୍ଶନ କଲେ ଓ ବିଭିନ୍ନ ସହର ମାନଙ୍କରେ ଯଥା :—ଅହମ୍ମଦାବାଦ୍, ବରୋଦା, ଗାନ୍ଧୀନଗର, ରାଜକୋଟ ପ୍ରଭୃତି ସହରମାନଙ୍କରେ ଭିନ୍ନଭିନ୍ନ କଳା-ପ୍ରଦର୍ଶନ କରିବାର ସୁଯୋଗ ପାଇଥିଲେ ଏବଂ ବହୁ ଜାଗାରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଓ ଉପହାର ମଧ୍ୟ ପାଇଥିଲେ ।

ସେହିପରି ଆମ ପାଖ ବଙ୍ଗଳା ଦେଶ ଓ ଆନ୍ଧ୍ର ରାଜ୍ୟର ବହୁକଳା ଅନୁଷ୍ଠାନମାନଙ୍କୁ ଆମେ ନିମନ୍ତ୍ରଣ କରି ସେମାନଙ୍କ ଜରିଆରେ ବହୁ ନୃତ୍ୟ, ଗୀତ ନାଟକାନୁଷ୍ଠାନମାନ ଆୟୋଜନ କରିଥିଲୁ । ତନ୍ମଧ୍ୟରେ ଶ୍ରୀ ତରୁଣ ରାୟ ଓ ଶ୍ରୀ ମନୋଜ ମିତ୍ରଙ୍କର ନାଟ୍ୟଦଳ, ପଦପେଟ୍ ଥିଏଟରର ପପେଟ୍ ନୃତ୍ୟଦଳ, ବିଶିଷ୍ଟ କଳାକାର କୁମାରୀ ରମେଶ୍ୱରୀଙ୍କର, କଲିକତାର କୁମାରୀ ବନ୍ଦନା ସେନ ଅନ୍ୟତମ । ତାମିଲ୍‌ନାଡୁର କୁମାରୀ ବି. ସ୍ୱର୍ଣ୍ଣମୁଖୀ, ବିଶିଷ୍ଟ ସହନାଇ ବାଦକ ବିସମିଲ୍ଲା ଖାଁ ଓ ତାଙ୍କ ଦଳ, ବେହେଲା ବାଦକ ଶ୍ରୀ ଭି. ଜି. ଯୋଗଙ୍କ ପରି ବହୁ ବାହାରର ନାମଜାଦା କଳାକାର ଆସି ସେମାନଙ୍କର କୃତିତ୍ୱ ଦେଖାଇଥିଲେ ।

ଆମ ନିଜ ରଙ୍ଗମଞ୍ଚର ସୁବିଧା ଥିବାରୁ ବିଭିନ୍ନ ଅନୁଷ୍ଠାନ ଦ୍ୱାରାରେ ବହୁ ବିଶିଷ୍ଟ କଳାକାର ଓ ସଂସ୍ଥାମାନଙ୍କୁ ନିମନ୍ତ୍ରଣ କରି କଳା ପ୍ରଦର୍ଶନର ସୁବିଧା ପାଉଛନ୍ତି । ତଦ୍ଦ୍ୱାରା ଏହି ଅନୁଷ୍ଠାନ ମଧ୍ୟ ଦେଖିବା ଶିଖିବାର ଅନେକ ସୁବିଧା ପାଉଛି ।

ନାମଜାଦା ପ୍ରଚ୍ଛଦପଟ୍ଟ ଗାୟକ ଶ୍ରୀ ଇସୁ ଦାସ, ନୃତ୍ୟଶିଳ୍ପୀ ସ୍ୱର୍ଗତ ଉଦୟ ଶଙ୍କରଙ୍କ ପୁତ୍ର ଆନନ୍ଦ ଶଙ୍କର ଏବଂ ତାଙ୍କ ଦଳ ଏପରି ବହୁ କଳାକାର ଏ ରଙ୍ଗମଞ୍ଚରେ ଆସି କଳା ପ୍ରଦର୍ଶନ କରିଛନ୍ତି । ପଡ଼ୋଶୀ ଆନ୍ଧ୍ର ଓ ବଙ୍ଗଳା ପ୍ରଦେଶର ବହୁ ନାଟକ, ସଙ୍ଗୀତ ଓ ନୃତ୍ୟ ନାଟକାଦି ଏହି ରଙ୍ଗମଞ୍ଚରେ ପରିବେଷଣ କରାଯାଇଛି । ଏହାଦ୍ୱାରା ଆମ୍ଭମାନଙ୍କୁ ବହୁକିଛି ଜାଣିବାକୁ ଓ ଶିଖିବାକୁ ମିଳୁଛି । ଏହି ମଞ୍ଚରେ ହିନ୍ଦୀ କବି ସମ୍ମିଳନୀର ମଧ୍ୟ ଆୟୋଜନ କରା ଯାଇଛି ।

ମଧୁସୂଦନ, ଭଞ୍ଜ ଜୟନ୍ତୀ, ଗୋପବନ୍ଧୁ ଶତବାର୍ଷିକୀ ପରି ଜାତୀୟ ପର୍ବ ପର୍ବାଣି ମଧ୍ୟ କେନ୍ଦ୍ର ତରଫରୁ ଏହି ପାଞ୍ଚ ବର୍ଷ ମଧ୍ୟରେ ବିଧିବଦ୍ଧ ଭାବେ ପାଳନ କରାଯାଇଛି ।

ଅଖିଳ ଭାରତୀୟ ଗାନ୍ଧର୍ବ ମହାବିଦ୍ୟାଳୟ ମଣ୍ଡଳ ବମ୍ବେର ଷୋଡ଼ଶ ସମାବର୍ତ୍ତନ ଉତ୍ସବ କଳାବିକାଶ କେନ୍ଦ୍ର ଜରିଆରେ ଏହି ସମୟ ମଧ୍ୟରେ ମହା ସମାରୋହରେ ପାଳନ କରା ଯାଇଥିଲା ।

କହୁ କହୁ ବହୁ କଥା କହିଗଲି । ଆପଣମାନେ ହୁଏତ ଏ ବିବରଣୀ ପଢ଼ି ଅତ୍ୟନ୍ତ ଖୁସୀ ହେବେ ଯେ କେନ୍ଦ୍ରର କାର୍ଯ୍ୟ ଭଲ ଭାବରେ ଚାଲିଛି ଏବଂ ବହୁ ଉନ୍ନତି ମୂଳକ ଯୋଜନା ମଧ୍ୟ ବିଗତ ବର୍ଷ ମାନଙ୍କରେ କାର୍ଯ୍ୟରେ ପରିଣତ ହୋଇଛି । କିନ୍ତୁ ଅସଲ କଥା, ସେଠି ନୁହେଁ । କେବଳ ବୈଭବ ଦେଖାଇଲେ ଏବଂ ପ୍ରଚାର ବଳରେ ହୁଏତ କେତେଦିନ ପାଇଁ ଲୋକେ ଭୁଲିଯିବେ । ନିଜର ଦୋଷ ଦୁର୍ବଳତା ପ୍ରକାଶ ନକଲେ କେବଳ ବୈଭବ ଏବଂ ହାମବଡ଼ା ମଧ୍ୟରେ ମାତି ରହିଲେ ଅନୁଷ୍ଠାନର ମଙ୍ଗଳ ହେବ ନାହିଁ ।

ଆମର ଅସଲ ଉଦ୍ଦେଶ୍ୟ କେନ୍ଦ୍ରର ଛାତ୍ରଛାତ୍ରୀ ମାନଙ୍କୁ ଉତ୍କଳୀୟ କଳାରେ ପାରଙ୍ଗମ କରାଇବା ଏବଂ ସେଥିଲାଗି ଆମର ଭାରତୀୟ ନୃତ୍ୟ ସଙ୍ଗୀତ ମହାବିଦ୍ୟାଳୟ ସ୍ଥାପନ କରାଯାଇଥିଲା । ଏଠାରୁ ଶିକ୍ଷା ପାଇଥିବା ପ୍ରତିଶତ ଅଶୀଭାଗ କଳାକାର ଆଜି ଆକାଶବାଣୀ, ଦୂରଦର୍ଶନ ଓ ବିଭିନ୍ନ ଅନୁଷ୍ଠାନ ମାନଙ୍କରେ ଜଡ଼ିତ ଅଛନ୍ତି । ସୁନାମଧନ୍ୟ ନାମଜାଦା କଳାକାର ଓ ଶିକ୍ଷକମାନେ ମଧ୍ୟ ଆଜି ଯେଉଁଠାରେ ଅଛନ୍ତି ସେମାନେ ସମସ୍ତେ କଳା ବିକାଶ କେନ୍ଦ୍ରର ଅବଦାନ । ଗତ ତିରିଶ ବର୍ଷର ପରିଶ୍ରମ ଫଳରେ ଏବଂ ସାଧନା ବଳରେ ଉତ୍କଳୀୟ କଳାର ବିଶେଷତଃ ଓଡ଼ିଶୀ ନୃତ୍ୟର ପ୍ରଚାର ଓ ପ୍ରସାର ଦିଗରେ କେନ୍ଦ୍ର ଅଗ୍ରଦୂତର କାର୍ଯ୍ୟ କରିଆସୁଛି ।

କିନ୍ତୁ ଆଜି ଏ ମହାବିଦ୍ୟାଳୟର ଅବସ୍ଥା କଣ ହୋଇଛି ? ଅଭାବ ଅନାଟନ ଭିତରେ କିଛିଦିନ କଟାଇବା ପରେ ଆମର କିଛି ଅଭିଜ୍ଞ ଶିକ୍ଷକ ଆମର ଅର୍ଥାଭାବରୁ ଭିନ୍ନ ଭିନ୍ନ ଜାଗାରେ ଚାକିରି ପାଇ କିମ୍ବା ଆୟର କିଛିପନ୍ଥା ଆକର୍ଷଣରେ ଚାଲିଗଲେ । ଯେଉଁ କେତେକ ଶିକ୍ଷକ ଅଛନ୍ତି ସେମାନଙ୍କୁ ଯଥେଷ୍ଟ ଦରମା ଆମେ ଦେଇପାରୁ ନାହୁଁ । ସୁତରାଂ ସେମାନଙ୍କଠାରୁ ଜୋରକରି କିଛି କାମ ଆଦାୟ କରାଯାଇ ପାରୁନାହିଁ । ଅଭାବ ଅନାଟନ ଦେଶସାରା ଘୋଟିରହିଛି । ଅଭିଭାବକ ମାନେ ମଧ୍ୟ ନିଜ ପିଲାଙ୍କର ଏପରି କଳାର ଉନ୍ନତି ଲାଗି ଧ୍ୟାନ ଦେଉନାହାନ୍ତି । ନାନା ବିଶୃଙ୍ଖଳା ମଧ୍ୟରେ ବ୍ୟସ୍ତ ରହି ଆଜିକାଲିର ଯୁବକ ଯୁବତୀମାନେ ମଧ୍ୟ ମନପ୍ରାଣ ଦେଇ କୌଣସି ବିଦ୍ୟାକୁ ହାସଲ କରୁନାହାନ୍ତି ।

ଏହିପରି ଅବସ୍ଥାରେ ଆମର ଯେତେ ବୈଭବ ଓ ସମ୍ମାନ ବଢ଼ିଲେ ମଧ୍ୟ ଯେଉଁ ଉଦ୍ଦେଶ୍ୟନେଇ ଏହି ସଂସ୍ଥାକୁ ସ୍ଥାପନା କରାଯାଇଥିଲା, ସେ ଉଦ୍ଦେଶ୍ୟ ହାସଲ ହେବା ପରିବର୍ତ୍ତେ ଆମେ କିପରି ପଛାଇ ଯିବାପରି ଲାଗୁଛି ।

ଆମେ କେତେକ ବନ୍ଧୁ ସାଧକ ହିସାବରେ ଏ ଅନୁଷ୍ଠାନ ପାଇଁ ଦିନରାତି କାର୍ଯ୍ୟ କରୁଥିଲୁ । ସେମାନଙ୍କ ମଧ୍ୟରୁ ଆଜି ଅନେକେ ଇହସଂସାରରେ ନାହାନ୍ତି । ସେମାନଙ୍କର ନାମ ଏହା ପୂର୍ବେ ମୁଁ ଉଲ୍ଲେଖ କରିଛି । କେତେକ ବନ୍ଧୁମାନେ କ୍ଷୁଦ୍ର କ୍ଷୁଦ୍ର କାରଣରୁ ମଧ୍ୟ କେନ୍ଦ୍ରପ୍ରତି ବିମୁଖ ହେବା କଥା ମଧ୍ୟ ମୁଁ ଆଗରୁ କହିଛି । ମୋର ଘନିଷ୍ଠ ସାଥୀ ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି, ଶ୍ରୀ ହରିହର ମିଶ୍ର, ଶ୍ରୀ ପ୍ରଦ୍ୟୁମ୍ନଭୂଷଣ ଚନ୍ଦ୍ର, ଶ୍ରୀ ରୂପଚାନ୍ଦ ଶର୍ମା ପ୍ରଭୃତି ଶାରୀରିକ ଅସୁସ୍ଥତା ହେତୁ ଆଗପରି କେନ୍ଦ୍ର କାର୍ଯ୍ୟରେ ଯୋଗ ଦେଇପାରୁ ନାହାନ୍ତି । ବୟସ ଦୃଷ୍ଟିରୁ କେତେ ବନ୍ଧୁ ମଧ୍ୟ ବାଧ୍ୟ ହୋଇ କେନ୍ଦ୍ରରୁ ଅଲଗା ରହିଛନ୍ତି । କେନ୍ଦ୍ରର କେତେକ କର୍ମଚାରୀ ଯେଉଁମାନେ କି ଅନୁଷ୍ଠାନ ସହିତ ସମ୍ପୃକ୍ତ ଅଛନ୍ତି ସେମାନେ ମଧ୍ୟ ନାନା କାରଣରୁ କେନ୍ଦ୍ର ଛାଡ଼ିବାର ଅଭିପ୍ରାୟରେ ଅଛନ୍ତି । ଏହିପରି ଅବସ୍ଥାରେ ଭାଙ୍ଗି ନପଡ଼ିଲେ ମଧ୍ୟ ଆମକୁ ନାନା ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଛି ।

ମୋ ସ୍ତ୍ରୀର ଦେହାବସାନ ପରେ ସଂସାରରେ ମୁଁ ଏକାକୀ । ବୟସ ମଧ୍ୟ ବଢୁଛି । ବାର୍ଦ୍ଧକ୍ୟ ଦୃଷ୍ଟିରୁ ସ୍ୱାସ୍ଥ୍ୟ ମଧ୍ୟ ସେତେ ଭଲ ରହୁନାହିଁ । ତା ଉପରେ ଉପରୋକ୍ତ ଘଟଣା ନେଇ ବେଳେ ବେଳେ ମୋତେ ଅନ୍ଧାର ପରି ଦିଶୁଛି । କିନ୍ତୁ ମୋର ବିଶ୍ୱାସ, ସତ୍‌କାର୍ଯ୍ୟରେ ଭଗବାନ ସାହାଯ୍ୟ କରିବେ ।

ଅନୁଷ୍ଠାନର ଅବନତିର ମୂଳ କାରଣ ହେଉଛି ଅର୍ଥର ଅଭାବ । କେନ୍ଦ୍ର ସଂଗଠନ ଯେଉଁ ସ୍ତରରେ ଆସି ପହଞ୍ଚିଛି, ସେଥିରେ ଆର୍ଥିକ ଦୃଷ୍ଟିରୁ ଏହାକୁ ସ୍ୱଚ୍ଛଳ କରାଇ ପାରିଲେ ଅନୁଷ୍ଠାନ ବିଶେଷତଃ ମହାବିଦ୍ୟାଳୟ ସୁରଖୁରରେ ଚାଲି ପାରିବ ।

ସେଥିପାଇଁ ଆମ୍ଭେମାନେ ଦଶ ଲକ୍ଷ ଟଙ୍କାର ଗୋଟିଏ ସ୍ଥାୟୀ ପାଣ୍ଠି ସଂଗ୍ରହ କରିବାର ଯୋଜନା ବାଢ଼ିଛୁ । ଏହି ଦଶଲକ୍ଷ ଟଙ୍କା ବ୍ୟାଙ୍କରେ ସବୁଦିନ ପାଇଁ ଗଚ୍ଛିତ ରହିବ ଏବଂ ଏହାର ସୁଧ ଯାହା ଆସିବ ତାହାକୁ କେବଳ କେନ୍ଦ୍ର ଉନ୍ନତିରେ ଲଗିବ । ଏହାଦ୍ୱାରା ପ୍ରାୟ ଏକଲକ୍ଷ ଟଙ୍କା ବର୍ଷକୁ ଆମେ ପାଇବୁ ।

ଆମ ରାଜ୍ୟର ଜଣେ ବଶିଷ୍ଟ ଶିଳ୍ପପତି ଡକ୍ଟର ବଂଶୀଧର ପଣ୍ଡା ଏଥିପାଇଁ ଆଗେଇ ଆସି କେନ୍ଦ୍ରକୁ ଏକଲକ୍ଷଟଙ୍କା ଦେବାପାଇଁ ପ୍ରତିଶ୍ରୁତି ଦେଇଛନ୍ତି । ସେହିଠାରୁ ଶୁଭାରମ୍ଭ ହେଲେ ମୋର ବିଶ୍ୱାସ, ଏପରି କେତେକ ପୃଷ୍ଠପୋଷକ ଓ କଳାପ୍ରେମୀ ଆଗେଇ ଆସିବେ ଯେଉଁମାନେକି ଏ ଦିଗରେ ସାହାଯ୍ୟ କରିବେ ।

କେନ୍ଦ୍ରର ସଭ୍ୟସଭ୍ୟାମାନଙ୍କ ମଧ୍ୟରୁ ପ୍ରାୟ ପନ୍ଦର ଜଣ ସ୍ୱେଚ୍ଛାରେ ଆଗେଇ ଆସିଛନ୍ତି ଯେଉଁମାନେ ଅନୁଷ୍ଠାନ ପାଇଁ କାର୍ଯ୍ୟ କରିବାର ବ୍ରତୀ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ସବଶ୍ରୀ ପ୍ରତାପ କୁମାର ଚୌଧୁରୀ, ଭଗବତୀ ଚରଣ ଘୋଷ ଓ ରଘୁନାଥ ନନ୍ଦ ଅନ୍ୟତମ । ଆଜି ୭୩ ବର୍ଷ ବୟସ ପରେ ଆତ୍ମୋନ୍ନତି କରିବା ପାଇଁ ମନ ବଳୁଛି । ସେଥିପାଇଁ ମୁଁ ଗୁରୁଙ୍କ ଆଦେଶରେ ଠିକ୍ କରିଛି ଯେ ୧୯୮୨ ମସିହା ମଇମାସ ୩୧ ତାରିଖ ଅର୍ଥାତ୍ ମୋର ୭୪ ତମ ଜନ୍ମ ଦିବସଠାରୁ ମୁଁ ଧୀରେ ଧୀରେ କେନ୍ଦ୍ରରୁ ଅବ୍ୟାହତି ନେବି । ମୋର କାହିଁକି ଦୃଢ଼ ବିଶ୍ୱାସ ଜନ୍ମିଛି ଯେ ମୁଁ ନଥିଲେ ମଧ୍ୟ ଯେଉଁ ବନ୍ଧୁମାନେ ଆଜି କେନ୍ଦ୍ରପ୍ରତି ଆକୃଷ୍ଟ ହୋଇ ଅନୁଷ୍ଠାନ ପାଇଁ ଛିଡ଼ା ହୋଇଛନ୍ତି, ସେମାନେ ଅନୁଷ୍ଠାନକୁ ବଞ୍ଚାଇରଖି ତାହାର ଗତିପଥରେ ଆଗେଇ ନେବେ ।

ମୋର ମନ୍ତବ୍ୟ ଶେଷ କରିବା ପୂର୍ବରୁ ଆମ କେନ୍ଦ୍ରର ପ୍ରଶାସନିକ ଅଫିସର ଶ୍ରୀ ନବକିଶୋର ମହାନ୍ତିଙ୍କ ନାମ ଉଲ୍ଲେଖ ନକଲେ କଥା ସମ୍ପୂର୍ଣ୍ଣ ହେବ ନାହିଁ । ଗତ ଦଶବର୍ଷ ହେଲା ସେ ଅକୁଣ୍ଠିତ ଭାବରେ କେନ୍ଦ୍ର କାର୍ଯ୍ୟରେ ନିଜକୁ ନିୟୋଜିତ କରି ଆସିଛନ୍ତି । ପାରିବାରିକ ଅସୁବିଧା ହେତୁ ସେ ମଧ୍ୟ କେନ୍ଦ୍ର ଛାଡ଼ିବାଉଦ୍ଦେଶ୍ୟରେ ଅଛନ୍ତି । ଏପରି ଗୋଟିଏ ଗୋଟିଏ ମେରୁଦଣ୍ଡ ଖସିବାରେ ଓ ସେ ସବୁକୁ ପୁଣି ସଜାଡ଼ିବାକୁ ସମୟ ଲାଗେ । କ'ଣ କରିବା ? ସଂସାରରେ ଯିବା ଆସିବା ତ' ଲାଗି ରହିଛି । କିନ୍ତୁ ଆମେ ପ୍ରତିଶ୍ରୁତି ଦେଉଛୁ ଯେ ସେ ଏବଂ ମୁଁ କିମ୍ବା ଆଉ ଯେଉଁମାନେ ଯେକି କେବଳ ବିଶେଷ ପାରିବାରିକ କାରଣ କିମ୍ବା ବାର୍ଦ୍ଧକ୍ୟ ଦୃଷ୍ଟିରୁ ଅନୁଷ୍ଠାନରୁ ଅଲଗା ହେବାକୁ ଯାଉଛୁ, ଦରକାର ପଡ଼ିଲେ ପୁଣି ଯୁଦ୍ଧ ଡାକରା ପାଇ ଆଗେଇ ଆସିବୁ । ବାରବାଟୀ ଷ୍ଟାଡ଼ିୟମ ପରି ଏ ଅନୁଷ୍ଠାନ ଚିରକାଳ ରହିବ ଏବଂ ଉତ୍କଳୀୟ କଳାର ଉନ୍ନତି ପାଇଁ ତାହାର କାର୍ଯ୍ୟ ଅବ୍ୟାହତ ରଖିବ । ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ଏହା ଜୋର ଦେଇ କହିପାରିବି ।

ଆଜି ମୋର ମନ୍ତବ୍ୟ ଏତିକିରେ ଶେଷ କରୁଛି । ବଞ୍ଚିରହିଲେ ପୁଣି ତ୍ରିକିଡ଼ିବର୍ଷ ପରେ ଏହାର ଦ୍ୱିତୀୟ ଖଣ୍ଡ ପ୍ରକାଶ କରିବାର ଅଭିଳାଷ ରହିଲା ।

---